ଦାଦା ଭଗବାନ ପ୍ରରୂପିତ

# ପାପ-ପୁଣ୍ୟ

ମନୁଷ୍ୟଗତି
**manusyagati**



ଦେବଗତି
**devgati**







ନର୍କଗତି
**narka gati**



ତିର୍ଯ୍ୟଞ୍ଚଗତି
**tiryacha gati**

Oriya

ଦାଦା ଭଗବାନ ପ୍ରରୂପିତ

# ପାପ-ପୁଣ୍ୟ

ମୂଳ ଗୁଜରାଟୀ ସଙ୍କଳନ : ଡା. ନୀରୁବେନ ଅମୀନ
ଅନୁବାଦ : ମହାତ୍ମାଗଣ

**ପ୍ରକାଶକ :** ଶ୍ରୀ ଅଜିତ୍ ସି. ପଟେଲ
ଦାଦା ଭଗବାନ ବିଜ୍ଞାନ ଫାଉଣ୍ଡେସନ୍
1, ବରୁଣ ଆପାର୍ଟମେଣ୍ଟ, 37, ଶ୍ରୀମାଳି ସୋସାଇଟୀ,
ନବରଙ୍ଗପୁରା ପୋଲିସ ଷ୍ଟେସନ୍ ପାଖ, ନବରଙ୍ଗପୁରା,
ଅହମଦାବାଦ- 380009, ଗୁଜରାଟ, ଇଣ୍ଡିଆ ।
ଫୋନ୍ - +91 93 2866 1166 / 93 2866 1177



**ପ୍ରଥମ ସଂସ୍କରଣ :** 500 ଖଣ୍ଡ, ନଭେମ୍ବର 2020

**ଭାବ ମୂଲ୍ୟ :** 'ପରମ ବିନୟ' ଏବଂ
'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

**ଦ୍ରବ୍ୟ ମୂଲ୍ୟ :** 40 ଟଙ୍କା

**ମୁଦ୍ରକ :** ଅମ୍ବା ଅଫ୍‌ସେଟ୍
B-99, ଇଲେକ୍ଟ୍ରୋନିକ୍ସ GIDC,
K-6 ରୋଡ୍, ସେକ୍ଟର-25,
ଗାନ୍ଧୀନଗର-382044
ଫୋନ୍ - (079) 35002142

# ତ୍ରିମନ୍ତ୍ର






ନମୋ ଅରିହଂତାଣଂ

ନମୋ ସିଦ୍ଧାଣଂ

ନମୋ ଆୟରିୟାଣଂ

ନମୋ ଉବଜ୍ଝାୟାଣଂ

ନମୋ ଲୋଏ ସବ୍ବସାହୁଣଂ

ଏସୋ ପଞ୍ଚ ନମୁକ୍କାରୋ,

ସବ୍ବ ପାବପ୍ପଣାସଣୋ

ମଙ୍ଗଲାଣଂ ଚ ସବ୍ବେସିଂ,

ପଢମଂ ହବଇ ମଙ୍ଗଲମ୍ ॥୧॥

ଓଁ ନମୋ ଭଗବତେ ବାସୁଦେବାୟ ॥୨॥

ଓଁ ନମଃ ଶିବାୟ ॥୩॥

॥ ଜୟ ସଚ୍ଚିଦାନନ୍ଦ ॥





# ‘ଦାଦା ଭଗବାନ’ କିଏ ?

ଜୁନ୍ ୧୯୫୮ରେ ଏକ ସନ୍ଧ୍ୟା, ସମୟ ପାଖାପାଖି ଛ’ଟା, ଭିଡ଼ରେ ଭରା ସୁରଟ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ୍ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୀତିରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର ‘ଦାଦା ଭଗବାନ’ ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । ‘ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ’ଣ ? ମୁକ୍ତି କ’ଣ ?’ ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସମ୍ପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ’ର ପାଟୀଦାର, କଣ୍ଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

‘ବ୍ୟାପାରରେ ଧର୍ମ ରହିବା ଉଚିତ, ଧର୍ମରେ ବ୍ୟାପାର ନୁହେଁ’, ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ ସେ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ୍ ବିନା କ୍ରମରେ ଏବଂ କ୍ରମ ଅର୍ଥାତ୍ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ୍ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ ‘ଦାଦା ଭଗବାନ କିଏ ?’ର ରହସ୍ୟ ବତାଇବାକୁ ଯାଇ କହୁଥିଲେ ଯେ, “ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ ‘ଏ.ଏମ୍. ପଟେଲ’ ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ ‘ଦାଦା ଭଗବାନ’ ଅଟନ୍ତି । ଦାଦା ଭଗବାନ ତ’ ଚଉଦ ଲୋକର ନାଥ ଅଟନ୍ତି । ସେ ତୁମ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ତୁମ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ ‘ଏଠାରେ’ ମୋ ଭିତରେ ସମ୍ପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।”

# ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉ ଥିଲେ । ସେ ନିଜର ଜୀବନକାଳ ମଧ୍ୟରେ ପୂଜ୍ୟ ଡା. ନୀରୁବେନ ଅମୀନ(ନୀରୁମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୁମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉ ଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୁମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆଶୀର୍ବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୁମାଁଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲା ଅଛି । ଯେପରି ପ୍ରଜ୍ଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ସ୍ୱୟଂର ଆତ୍ମା ଜାଗୃତ ହୋଇପାରେ ।

# ନିବେଦନ

ଜ୍ଞାନୀପୁରୁଷ ସଂପୂଜ୍ୟ ଦାଦା ଭଗବାନଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀୟ ଯେଉଁ ବାଣୀ ବାହାରିଛି, ସେସବୁକୁ ରେକର୍ଡ଼ କରି, ସଙ୍କଳନ ତଥା ସମ୍ପାଦନ କରି ପୁସ୍ତକ ରୂପରେ ପ୍ରକାଶିତ କରାଯାଉଛି । ବିଭିନ୍ନ ବିଷୟ ଉପରେ ବାହାରିଥିବା ସରସ୍ୱତୀର ଅଦ୍‌ଭୁତ ସଙ୍କଳନ ଏହି ପୁସ୍ତକରେ ହୋଇଛି, ଯାହା ନୂଆ ପାଠକଙ୍କ ପାଇଁ ବରଦାନରୂପ ସାବ୍ୟସ୍ତ ହେବ ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ ପାଠକଙ୍କୁ ଦାଦାଜୀଙ୍କର ହିଁ ବାଣୀ ଶୁଣା ଯାଉଛି, ଏପରି ଅନୁଭବ ହେଉ, ଯେଉଁ କାରଣରୁ ହୁଏତ କିଛି ଜାଗାରେ ଅନୁବାଦର ବାକ୍ୟ ରଚନା ଓଡ଼ିଆ ବ୍ୟାକରଣ ଅନୁସାରେ ତ୍ରୁଟିପୂର୍ଣ୍ଣ ଲାଗିପାରେ, କିନ୍ତୁ ଏଠାରେ ଯଦି ଆଶୟକୁ ବୁଝି ପଢ଼ାଯାଏ ତେବେ ଅଧିକ ଲାଭକାରୀ ହେବ ।

ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶା ଯାଇଥିବା ଶବ୍ଦ ବା ବାକ୍ୟ ପରମ ପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହା ଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ପାଇଁ ଲେଖାଯାଇଛି । ଯେବେକି କିଛି ଜାଗାରେ ଇଂରାଜୀ ଶବ୍ଦର ଓଡ଼ିଆ ଅର୍ଥ ରୂପରେ ରଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଶବ୍ଦ ଯେମିତିକୁ ସେମିତି *ଇଟାଲିକ୍ସରେ* ରଖାଯାଇଛି, କାରଣ ସେହି ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କୌଣସି ଶବ୍ଦ ନାହିଁ, ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇ ପାରିବ । ପରନ୍ତୁ ସେହି ଶବ୍ଦର ସମାର୍ଥକ ଶବ୍ଦ, ବନ୍ଧନୀରେ ଏବଂ ପୁସ୍ତକର ଶେଷରେ ମଧ୍ୟ ଦିଆଯାଇଛି ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି ତଥାପି ଦାଦାଶ୍ରୀଙ୍କ ଆତ୍ମଜ୍ଞାନର ପ୍ରକୃତ ଆଶୟ, ଯେମିତିକୁ ସେମିତି, ଆପଣଙ୍କୁ ମୂଳ ଗୁଜରାଟୀ ଭାଷାରେ ହିଁ ଅବଗତ ହେବ । ଯେଉଁମାନଙ୍କୁ ଜ୍ଞାନର ଗଭୀରତାକୁ ଯିବାର ଥିବ, ଜ୍ଞାନର ପ୍ରକୃତ ମର୍ମ ବୁଝିବାର ଥିବ, ସେମାନେ ଏଥିପାଇଁ ଗୁଜରାଟୀ ଭାଷା ଶିଖନ୍ତୁ, ଏହା ଆମର ଅନୁରୋଧ ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।



# ସମ୍ପାଦକୀୟ

ଆମ ଭାରତରେ ତ ପୁଣ୍ୟ-ପାପର ଜ୍ଞାନ ଶିଶୁକୁ ସେବେଠାରୁ ଦିଆଯାଏ ଯେବେଠାରୁ ସେ ପାଦ ଥାପିବା ଆରମ୍ଭ କରେ । ଛୋଟ ଶିଶୁ ଯଦି ଜୀବଜନ୍ତୁ ମାରୁଥିବ, ତେବେ ମା ତା' ହାତକୁ ଟାଣି ଆଣେ ଏବଂ କ୍ରୋଧ କରି କୁହେ, 'ମାରନ୍ତି ନାହିଁ, ପାପ ଲାଗିବ!' ପିଲାଦିନରୁ ହିଁ ବାଳକକୁ ଶୁଣିବାକୁ ମିଳେ, 'ଭୁଲ କରିଲେ ପାପ ଲାଗିବ, ଏପରି କରନ୍ତି ନାହିଁ ।' ଅନେକ ଥର ମନୁଷ୍ୟକୁ ଯେବେ ଦୁଃଖ ପଡ଼େ, ସେତେବେଳେ କାନ୍ଦି ଉଠେ, କହିବ ମୋର କେଉଁ ଜନ୍ମର ପାପର ଦଣ୍ଡ ଭୋଗୁଛି । ଭଲ ହୋଇଯାଏ ତେବେ କହିବେ 'ପୁଣ୍ୟଶାଳୀ ଅଟେ' । ଏହିପରି ପାପ-ପୁଣ୍ୟ ଶବ୍ଦର ପ୍ରୟୋଗ ଆମ ବ୍ୟବହାରରେ ପ୍ରାୟତଃ ହୋଇ ଚାଲିଥାଏ ।

ଭାରତରେ ତ କ'ଣ, ବିଶ୍ୱରେ ସମସ୍ତେ ପୁଣ୍ୟ-ପାପକୁ ସ୍ୱୀକାର କରନ୍ତି ଏବଂ ସେଥିରୁ କିପରି ମୁକୁଳି ହେବ, ତାହାର ଉପାୟ ମଧ୍ୟ ବତାଯାଇଛି ।

କିନ୍ତୁ ପୁଣ୍ୟ-ପାପର ଯଥାର୍ଥ ପରିଭାଷା କ'ଣ ? ଯଥାର୍ଥ ଅର୍ଥ କ'ଣ ? ପୂର୍ବଜନ୍ମ-ଏହି ଜନ୍ମ ଏବଂ ପର ଜନ୍ମ ସହିତ ପାପ-ପୁଣ୍ୟର କି ସମ୍ବନ୍ଧ ଅଛି ? ଜୀବନ ବ୍ୟବହାରରେ ପାପ-ପୁଣ୍ୟର ଫଳ କିପରି ଭୋଗିବାକୁ ପଡ଼େ ? ପୁଣ୍ୟ ଏବଂ ପାପର ପ୍ରକାରଭେଦ କିଭଳି ଅଟେ ? ସେଠାରୁ ନେଇ ସିଧା ମୋକ୍ଷ ମାର୍ଗରେ ପାପ-ପୁଣ୍ୟର କ'ଣ ଉପଯୋଗିତା ଅଛି ? ମୋକ୍ଷ ପ୍ରାପ୍ତି ପାଇଁ ପାପ-ପୁଣ୍ୟ ଉଭୟ ଜରୁରୀ ଅଟେ, ନା ଉଭୟରୁ ମୁକ୍ତ ହେବାକୁ ପଡ଼ିବ ?

ପାପ-ପୁଣ୍ୟର ଏତେ ସବୁ କଥା ଶୁଣିବାକୁ ମିଳେ, ତେବେ ଏଥିରେ ସତ କ'ଣ ? ସେହି ସମାଧାନ କେଉଁଠୁ ମିଳିବ ? ପାପ-ପୁଣ୍ୟର ଯଥାର୍ଥ ଜ୍ଞାନର ଅଭାବରୁ ଅନେକ ଜଟିଳତା ସୃଷ୍ଟି ହୋଇଯାଏ । ପାପ ଏବଂ ପୁଣ୍ୟର ପରିଭାଷା କେଉଁଠି ବି କ୍ଲିୟରକଟ୍ ଏବଂ ଶର୍ଟକଟ୍ (ସ୍ୱଷ୍ଟ ଏବଂ ସଂକ୍ଷେପରେ) ଦେଖିବାକୁ ମିଳେ ନାହିଁ । ସେଥିପାଇଁ ପାପ-ପୁଣ୍ୟର ଭିନ୍ନ-ଭିନ୍ନ ପରିଭାଷା ସାମାନ୍ୟ ମନୁଷ୍ୟକୁ ଦ୍ୱନ୍ଦ୍ୱରେ ପକାଏ, ଏବଂ ଶେଷରେ ପୁଣ୍ୟ ବାନ୍ଧିବାର ଏବଂ ପାପରୁ ଅଟକିବାର ତ ହୁଏ ହିଁ ନାହିଁ ।

ପରମ ପୂଜ୍ୟ ଦାଦାଶ୍ରୀ ସେହି ପରିଭାଷା ବହୁତ ସରଳ, ସିଧା ଏବଂ ସୁନ୍ଦର ଢଙ୍ଗରେ ଦେଇଛନ୍ତି ଯେ 'ଅନ୍ୟକୁ ସୁଖ ଦେଲେ ପୁଣ୍ୟ ବନ୍ଧା ହୁଏ ଏବଂ ଅନ୍ୟକୁ ଦୁଃଖ ଦେଲେ ପାପ ବନ୍ଧା ହୁଏ ।' ଏବେ କେବଳ ଏତିକି ଜାଗୃତି ଯଦି ସାରାଦିନ ରଖିବ ତେବେ ସେଥିରେ ସବୁ ଧର୍ମ ଆସିଗଲା ଏବଂ ଅଧର୍ମ ଚାଲିଗଲା !

ଆଉ ଭୁଲରେ ବି ଯଦି କାହାକୁ ଦୁଃଖ ଦେଇ ଦିଆଯାଏ ତେବେ ତାହାର ତୁରନ୍ତ ପ୍ରତିକ୍ରମଣ କରି ନିଅ । ପ୍ରତିକ୍ରମଣ ଅର୍ଥାତ ଯାହାକୁ ବାଣୀରୁ, ଆଚରଣରୁ ଅଥବା ମନରୁ ବି

ଯଦି ଦୁଃଖ ପହଞ୍ଚିଥିବ, ତେବେ ତୁରନ୍ତ ତା' ଭିତରେ ବିରାଜମାନ ଆତ୍ମା, ଶୁଦ୍ଧାତ୍ମାଙ୍କଠାରୁ କ୍ଷମା ମାଗିନେବା, ହୃଦୟପୂର୍ବକ ପଶ୍ଚାତାପ ହେବା ଉଚିତ ଏବଂ ଆଉ ଏପରି କରିବି ନାହିଁ, ଏଭଳି ଦୃଢ଼ 'ନିଶ୍ଚୟ' ହୋଇଯିବା ଉଚିତ । କେବଳ ଏତିକି, ବାସ୍ । ଆଉ ତାହା ବି ମନରେ, କିନ୍ତୁ ଯଦି ହୃଦୟର ସହ କରିନିଅ, ତେବେ ମଧ୍ୟ ତାହାର ଏକଜାକ୍ଟ (ଯଥାର୍ଥ) ଫଳ ମିଳେ ।

ପରମପୂଜ୍ୟ ଦାଦାଶ୍ରୀ କୁହନ୍ତି, ଜୀବନ ପାପ ଏବଂ ପୁଣ୍ୟର ଉଦୟ ଅନୁସାରେ ଚାଲେ, ଅନ୍ୟ କେହି ଚଲାଇବାବାଲା ନାହିଁ । ପୁଣି କାହାକୁ ଦୋଷ ଅବା ସାବାସୀ ଦେବାର କେଉଁଠି ରହିଲା ? ଏଣୁ ଯେତେବେଳେ ପାପର ଉଦୟ ହୋଇଥିବ, ସେତେବେଳେ ଅଧିକ ପ୍ରୟାସ କରିବା ଛାଡ଼ି ଶାନ୍ତିରେ ବସି ରହ ଏବଂ ଆତ୍ମାର କର । ପୁଣ୍ୟ ଯଦି ଫଳ ଦେବା ପାଇଁ ସମ୍ମୁଖ ହୋଇଛି ତେବେ ପୁଣି ସହସ୍ର ପ୍ରୟାସ କ'ଣ ପାଇଁ ? ଆଉ ପୁଣ୍ୟ ଯେବେ ଫଳ ଦେବା ପାଇଁ ସମ୍ମୁଖ ହୋଇନାହିଁ ତେବେ ପୁଣି ସହସ୍ର ପ୍ରୟାସ କ'ଣ ପାଇଁ ? ଏଣୁ ତୁ ଧର୍ମ କର ।

ପୁଣ୍ୟ-ପାପ ସମ୍ବନ୍ଧୀୟ ସାମାନ୍ୟ ପ୍ରଶ୍ନରୁ ନେଇ ସୂକ୍ଷ୍ମାତିସୂକ୍ଷ୍ମ ପ୍ରଶ୍ନର ମଧ୍ୟ ସେତିକି ସରଳ, ସଂକ୍ଷିପ୍ତ ଏବଂ ସଚ୍ଚୋଟ ସମାଧାନକାରୀ ଉତ୍ତର ଏଠାରେ ମିଳେ, ପରମପୂଜ୍ୟ ଦାଦାଶ୍ରୀଙ୍କ ନିଜ ଦେଶୀ ଶୈଳୀରେ ! ମୋକ୍ଷ ପ୍ରାପ୍ତି ପାଇଁ କ'ଣ ପୁଣ୍ୟର ଆବଶ୍ୟକତା ଅଛି ? ଯଦି ଆବଶ୍ୟକତା ଅଛି ତେବେ କେଉଁ ପ୍ରକାରର ଏବଂ କିଭଳି ପୁଣ୍ୟ ଦରକାର ?

ପୁଣ୍ୟ ତ ନିଶ୍ଚିତ ଦରକାର କିନ୍ତୁ ପୁଣ୍ୟାନୁବନ୍ଧୀ ପୁଣ୍ୟ ଦରକାର । କେବଳ ଏତିକି ନୁହେଁ କିନ୍ତୁ ମୋକ୍ଷର *ଆଶୟ* (ଅଭିଳାଷ) ସହିତ ହିଁ ପୁଣ୍ୟ ବନ୍ଧା ହୋଇଥିବା ଦରକାର, ଯାହାଦ୍ୱାରା ସେହି ପୁଣ୍ୟର ଫଳ ସ୍ୱରୂପ ମୋକ୍ଷପ୍ରାପ୍ତିର ସମସ୍ତ ସାଧନ ଏବଂ ଅନ୍ତିମ ସାଧନ ରୂପେ ଆତ୍ମଜ୍ଞାନୀ ମିଳିବେ ! ଆଉ ପୁଣ୍ୟାନୁବନ୍ଧୀ ପୁଣ୍ୟ ଯଦି ମୋକ୍ଷର ହେତୁ ପାଇଁ ବନ୍ଧା ହୋଇଥିବ ତେବେ ତାହା ସହିତ :- ୧) କ୍ରୋଧ, ମାନ, ମାୟା, ଲୋଭ କମ ହେବା ଦରକାର, କଷାୟ ମନ୍ଦ ହୋଇଯିବା ଦରକାର, ୨) ନିଜ ପାଖରେ ଯାହା ଥିବ ତାହା ଅନ୍ୟମାନଙ୍କ ପାଇଁ ଲୁଟେଇ ଦିଏ ଏବଂ ୩) ପ୍ରତ୍ୟେକ କ୍ରିୟାରେ ପ୍ରତିବଦଳର ଇଚ୍ଛା ନ ରଖେ ତେବେଯାଇ ସେହି ପୁଣ୍ୟ ମୋକ୍ଷ ପାଇଁ କାମରେ ଆସିବ, ନହେଲେ ଅନ୍ୟ ସବୁ ପୁଣ୍ୟ ତ ଭୌତିକ ସୁଖ ଦେଇ ବରଫ ପରି ତରଳି ଯିବେ !

ଏପରି ପାପ-ପୁଣ୍ୟର ଯଥାର୍ଥ ଜ୍ଞାନ ପ୍ରକଟ ଜ୍ଞାନୀପୁରୁଷଙ୍କ ପାଖରୁ ହିଁ ପ୍ରଶ୍ନୋତ୍ତରୀ ସତ୍‌ସଙ୍ଗ ଦ୍ୱାରା ପ୍ରାପ୍ତ ହୋଇଛି, ଯାହା ଏଠାରେ ସଙ୍କଳିତ ହୋଇଛି ।

**-ଡା. ନୀରୂବେନ ଅମୀନଙ୍କ ଜୟ ସଚ୍ଚିଦାନନ୍ଦ**

# ପାପ-ପୁଣ୍ୟ

## କେଉଁଠି ବି ମିଳେ ନାହିଁ ପାପ-ପୁଣ୍ୟର ଏଭଳି ପରିଭାଷା

**ପ୍ରଶ୍ନକର୍ତ୍ତା :** ପାପ ଏବଂ ପୁଣ୍ୟ ପ୍ରକୃତରେ କ'ଣ ?

**ଦାଦାଶ୍ରୀ :** ପାପ ଏବଂ ପୁଣ୍ୟର ଅର୍ଥ କ'ଣ ? କ'ଣ କରିଲେ ପୁଣ୍ୟ ହୁଏ ? ପୁଣ୍ୟ-ପାପର ଉତ୍ପାଦନ କେଉଁଠୁ ହୁଏ ? ତେବେ କହିବା, 'ଏହି ଜଗତ ଯେପରି ଅଟେ ଲୋକମାନେ ସେପରି ଜାଣି ନାହାନ୍ତି, ସେଥିପାଇଁ ନିଜକୁ ଯେପରି ଠିକ ଲାଗେ ସେପରି ଆଚରଣ କରନ୍ତି । ଅର୍ଥାତ କେଉଁ ଜୀବକୁ ମାରନ୍ତି, କାହାକୁ ଦୁଃଖ ଦିଅନ୍ତି, କାହାକୁ ନିର୍ଯ୍ୟାତନା ଦିଅନ୍ତି ।'

କୌଣସି ବି ଜୀବକୁ କିଛି ବି ନିର୍ଯ୍ୟାତନା ଦେବା ବା ଦୁଃଖ ଦେବା, ତାହାଦ୍ୱାରା ପାପ ବନ୍ଧା ହୁଏ । କାରଣ ଗଡ୍ ଇଜ୍ ଇନ୍ ଏଭ୍ରୀ କ୍ରିଏଚର୍ ହ୍ୱେଦର୍ ଭିଜିବଲ୍ ଅର୍ ଇନ୍‌ଭିଜିବଲ୍ । (ଆଖିରେ ଦୃଶ୍ୟମାନ ହେଉଥିବା କିମ୍ବା ନ ହେଉଥିବା ଏପରି, ପ୍ରତ୍ୟେକ ଜୀବ ମଧ୍ୟରେ ଭଗବାନ ଅଛନ୍ତି ।) ଏହି ଜଗତର ଲୋକ, ପ୍ରତ୍ୟେକ ଜୀବ କେବଳ ଭଗବାନ ସ୍ୱରୂପ ହିଁ ଅଟନ୍ତି । ଏହି ଗଛ ଅଛି, ସେଥିର ମଧ୍ୟ ଜୀବ ଅଛି । ଏବେ ଏମିତିରେ ତ ଲୋକେ ମୁହଁରେ କୁହନ୍ତି ନିଶ୍ଚୟ ଯେ ସମସ୍ତଙ୍କ ମଧ୍ୟରେ ଭଗବାନ ଅଛନ୍ତି, କିନ୍ତୁ ବାସ୍ତବରେ ତା' ଶ୍ରଦ୍ଧାରେ ନାହିଁ । ସେଥିପାଇଁ ଗଛକୁ କାଟନ୍ତି, ଏମିତି ହିଁ ବିନା କାରଣରେ ଭାଙ୍ଗୁଥାନ୍ତି, ସେଥିପାଇଁ ସବୁ କ୍ଷତି ପହଞ୍ଚାନ୍ତି । କୌଣସି ବି ଜୀବକୁ କିଛି ବି ଦୁଃଖ ଦେବା, ତାହାଦ୍ୱାରା ପାପ ବନ୍ଧା ହୁଏ ଏବଂ କୌଣସି ବି ଜୀବକୁ କିଛି ବି ସୁଖ ଦେବା, ତାହାଦ୍ୱାରା ପୁଣ୍ୟ ବନ୍ଧା ହୁଏ । ତୁମେ ଯଦି ବଗିଚାରେ ପାଣି ଛିଞ୍ଚିବ ସେତେବେଳେ ଜୀବମାନଙ୍କୁ ସୁଖ ହୁଏ ନା ଦୁଃଖ ? ସେ ଯେଉଁ ସୁଖ ଦିଅ, ତାହାଦ୍ୱାରା ପୁଣ୍ୟ ବନ୍ଧନ ହୁଏ । ବାସ୍, କେବଳ ଏତିକି ହିଁ ବୁଝିବାର ଅଛି ।

ସାରା ଜଗତର ଯେଉଁ ଧର୍ମ ଅଛି, ସେସବୁକୁ ସାର ରୂପରେ ଯଦି କହିବାକୁ ହେବ ତେବେ ଗୋଟିଏ କଥା ବୁଝାଇ ଦେଉଛି ସମସ୍ତଙ୍କୁ, ଯେ ଯଦି ତୁମକୁ ସୁଖ ଦରକାର ତେବେ ଅନ୍ୟ ଜୀବଙ୍କୁ ସୁଖ ଦିଅ ଆଉ ଦୁଃଖ ଦରକାର ତେବେ ଦୁଃଖ ଦିଅ । ଯାହା ଅନୁକୂଳ ହେଉଛି ତାହା କର, ଏହାକୁ ପୁଣ୍ୟ ଏବଂ ପାପ କୁହାଯାଏ । ସୁଖ ଦରକାର ତେବେ ସୁଖ ଦିଅ, ତାହାଦ୍ୱାରା କ୍ରେଡ଼ିଟ୍ ଜମା ହେବ ଏବଂ ଦୁଃଖ ଦରକାର ତେବେ ଦୁଃଖ ଦିଅ, ତାହାଦ୍ୱାରା ଡେବିଟ୍ ଜମା ହେବ । ତାହାର ଫଳ ତୁମକୁ ଚାଖିବାକୁ ପଡ଼ିବ ।

## ଭଲ-ଖରାପ, ପାପ-ପୁଣ୍ୟର ଆଧାରରେ

କେବେ-କେବେ ଭଲ ସଂଯୋଗ ଆସେ କି ?

**ପ୍ରଶ୍ନକର୍ତ୍ତା :** ଭଲ ବି ଆସେ ।

**ଦାଦାଶ୍ରୀ :** ସେ ଖରାପ ଏବଂ ଭଲ ସଂଯୋଗ ସବୁକୁ କିଏ ପଠାଉଥିବ ? ନିଜର ହିଁ ପୁଣ୍ୟ ଏବଂ ପାପର ଆଧାରରେ ସଂଯୋଗ ମିଳେ । ଏପରି ଅଟେ, ଏହି ଦୁନିଆକୁ ଚଲାଇବାବାଲା କେହି ନାହିଁ । ଯଦି କେହି ଚଲାଇବାବାଲା ଥାଆନ୍ତା ତେବେ ପାପ-ପୁଣ୍ୟର ଆବଶ୍ୟକତା ନଥିଲା ।

**ପ୍ରଶ୍ନକର୍ତ୍ତା :** ଏହି ଜଗତକୁ ଚଲାଇବାବାଲା କିଏ ?

**ଦାଦାଶ୍ରୀ :** ପୁଣ୍ୟ ଏବଂ ପାପର ପରିଣାମ । ପୁଣ୍ୟ ଏବଂ ପାପର ପରିଣାମରୁ ଏହି ଜଗତ ଚାଲୁଅଛି । କୌଣସି ଭଗବାନ ଚଲାନ୍ତି ନାହିଁ । କେହି ଏଥିରେ ହାତ ମାରନ୍ତି ନାହିଁ ।

## ପୁଣ୍ୟ ପ୍ରାପ୍ତିର ପାହାଚ

**ପ୍ରଶ୍ନକର୍ତ୍ତା :** ଏବେ ପୁଣ୍ୟ ଅନେକ ପ୍ରକାରର ଅଛି, ତେବେ କେଉଁ-କେଉଁ ପ୍ରକାରର କାର୍ଯ୍ୟ କଲେ ପୁଣ୍ୟ କୁହାଯିବ ଆଉ ପାପ କୁହାଯିବ ?

**ଦାଦାଶ୍ରୀ :** ପ୍ରତ୍ୟେକ ଜୀବକୁ ସୁଖ ଦେବା, ସେଥିରେ ଫାଷ୍ଟ ପ୍ରିଫରେନ୍ସ (ପ୍ରଥମ ମହତ୍ତ୍ୱ) ମନୁଷ୍ୟ । ମନୁଷ୍ୟଙ୍କର ହୋଇଗଲା ତେବେ ପୁଣି ଦ୍ୱିତୀୟ ପ୍ରିଫରେନ୍ସ ପଞ୍ଚେନ୍ଦ୍ରିୟ ଜୀବ । ତୃତୀୟ ପ୍ରିଫରେନ୍ସରେ ଚାରି ଇନ୍ଦ୍ରିୟ, ତିନି ଇନ୍ଦ୍ରିୟ, ଦୁଇ ଇନ୍ଦ୍ରିୟ,

ଏକ ଇନ୍ଦ୍ରିୟ ଏହିପରି ସେମାନଙ୍କୁ ଯଦି ସୁଖ ଦେବା, ତାହାଦ୍ୱାରା ହିଁ ପୁଣ୍ୟ ହୁଏ ଆଉ ଯଦି ସେମାନଙ୍କୁ ଦୁଃଖ ଦେବା, ତାହାଦ୍ୱାରା ପାପ ହୁଏ ।

**ପ୍ରଶ୍ନକର୍ତ୍ତା :** ଭୌତିକ ସୁଖ ମିଳେ, ତେବେ ସେମାନେ କେଉଁ ପ୍ରକାରର କର୍ମ କରିଥିବେ ଯେ ତାହା ମିଳେ ?

**ଦାଦାଶ୍ରୀ :** ଯଦି କେହି ଦୁଃଖୀ ଥିବ, ତା'କୁ ସୁଖ ଦେବା, ତାହାଦ୍ୱାରା ପୁଣ୍ୟ ବନ୍ଧନ ହୁଏ ଏବଂ ପରିଣାମ ସ୍ୱରୂପ ସେହିପରି ସୁଖ ଆମକୁ ମଧ୍ୟ ମିଳେ । ଯଦି କାହାକୁ ଦୁଃଖ ଦିଅ, ତେବେ ତୁମକୁ ଦୁଃଖ ମିଳେ । ତୁମକୁ ଯାହା ପସନ୍ଦ ତାହା ଦିଅ ।

ଦୁଇ ପ୍ରକାରର ପୁଣ୍ୟ ଅଛି । ଗୋଟିଏ ପୁଣ୍ୟରୁ ଭୌତିକ ସୁଖ ମିଳେ ଏବଂ ଆଉ ଏକ ଏପରି ପୁଣ୍ୟ ଅଛି ଯାହା ଆମକୁ 'ପ୍ରକୃତ ସ୍ୱାଧୀନତା' ପ୍ରାପ୍ତ କରାଏ ।

## ଉଭୟ କର୍ମରେ ହିଁ ଗଣାଯାଏ !

**ପ୍ରଶ୍ନକର୍ତ୍ତା :** ପାପ ଏବଂ କର୍ମ ଗୋଟିଏ ଜିନିଷ ନା ଅଲଗା ?

**ଦାଦାଶ୍ରୀ :** ପୁଣ୍ୟ ଏବଂ ପାପ ଉଭୟକୁ କର୍ମ ହିଁ କୁହାଯାଏ । କିନ୍ତୁ ପୁଣ୍ୟର କର୍ମ ଅଟକାଏ ନାହିଁ ଆଉ ପାପର କର୍ମ ନିଜ ଧାରଣା ଅନୁସାରେ ହେବାକୁ ଦିଏ ନାହିଁ, ଅଟକାଏ ।

ଯେପର୍ଯ୍ୟନ୍ତ ଏପରି ମାନ୍ୟତା ଅଛି ଯେ 'ମୁଁ ★ଚନ୍ଦୁଲାଲ ଅଟେ', ସେପର୍ଯ୍ୟନ୍ତ କର୍ମ ବନ୍ଧନ ହୋଇ ଚାଲିଥାଏ । ଦୁଇ ପ୍ରକାରର କର୍ମ ବନ୍ଧନ ହୁଏ । ଯଦି ପୁଣ୍ୟ କରେ ତେବେ ସଦ୍‌ଭାବନା କର୍ମ ବାନ୍ଧେ ଆଉ ପାପ କରେ ତେବେ ଦୁର୍ଭାବନା କର୍ମ ବାନ୍ଧେ । ଯେପର୍ଯ୍ୟନ୍ତ ହକ୍କ ଏବଂ *ଅଣହକ୍କ* (ଯାହା ନିଜ ହକ୍କର ନୁହେଁ)ର ବିଭାଜନ ନ ହୋଇଛି, ସେପର୍ଯ୍ୟନ୍ତ ଯେପରି ଲୋକଙ୍କର ଦେଖେ ସେହିପରି ସେ ମଧ୍ୟ ଓଲଟା ଶିଖିଯାଏ । ମନରେ ଅଲଗା ଥାଏ, ବାଣୀରେ କିଛି ତୃତୀୟମ୍ ହିଁ କହେ ଆଉ ଆଚରଣରେ ତ ପୁରା ଅଲଗା ହିଁ ହୁଏ । ଏଣୁ ନିରୋଳା ପାପ ହିଁ ବନ୍ଧା ହୁଏ । ସେଥିପାଇଁ ଏବେ ଲୋକଙ୍କୁ କେବଳ ପାପର ହିଁ ଆୟ ହେଉଛି ।

## ପୁଣ୍ୟ-ପାପ, ତାହା ବ୍ୟବହାର ଧର୍ମ

**ପ୍ରଶ୍ନକର୍ତ୍ତା :** ତେବେ ପୁଣ୍ୟ ଏବଂ ଧର୍ମ ମଧ୍ୟରେ କ'ଣ ପାର୍ଥକ୍ୟ ?

★ ପାଠକେ ଚନ୍ଦୁଲାଲ ସ୍ଥାନରେ ନିଜ ନାମ ପଢ଼ନ୍ତୁ

**ଦାଦାଶ୍ରୀ :** ପୁଣ୍ୟ, ତାହା ବ୍ୟବହାର ଧର୍ମ ଅଟେ, ପ୍ରକୃତ ଧର୍ମ ନୁହେଁ । ବ୍ୟବହାର ଧର୍ମ ଅର୍ଥାତ ନିଜେ ସୁଖୀ ହେବା ପାଇଁ । ପୁଣ୍ୟ ଅର୍ଥାତ୍ କ୍ରେଡ଼ିଟ୍ । ଏହାଦ୍ୱାରା ଆମେ ସୁଖୀ ହୋଇ ପାରିବା, ଯଦି କ୍ରେଡ଼ିଟ୍ ଥିବ ତେବେ ଆମେ ଶାନ୍ତିରେ ରହି ପାରିବା ଏବଂ ସେତେବେଳେ ଠିକ ରୂପେ ଧର୍ମ ହୋଇ ପାରିବ । ଆଉ ପାପ ଅର୍ଥାତ ଡେବିଟ୍ । ପୁଣ୍ୟ ଯଦି ନଥିବ, କ୍ରେଡ଼ିଟ୍ ନଥିବ, ତେବେ ଆମେ ଧର୍ମ କରିବା କିପରି ? କ୍ରେଡ଼ିଟ୍ ଥିବ ତେବେ ଗୋଟେ ପଟେ ଶାନ୍ତି ରହିବ, ଅର୍ଥାତ ଆମେ ଧର୍ମ କରିପାରିବା ।

**ପ୍ରଶ୍ନକର୍ତ୍ତା :** କେଉଁ କର୍ମ କରିବା ଦ୍ୱାରା ପୁଣ୍ୟ ହୁଏ ଏବଂ କେଉଁ କର୍ମ କରିବା ଦ୍ୱାରା ଧର୍ମ ହୁଏ ?

**ଦାଦାଶ୍ରୀ :** ଏ ସବୁ ଜୀବ, ମନୁଷ୍ୟ, ଗଛ-ଲତା, ଗାଈ-ମଇଁଷି, ପୁଣି ପଶୁ-ପକ୍ଷୀ, ଜଳଚର ଏ ସବୁ ଜୀବ ସୁଖ ଖୋଜନ୍ତି । ଏବଂ ଦୁଃଖ କାହାକୁ ପସନ୍ଦ ନୁହେଁ । ସେଥିପାଇଁ ତୁମ ପାଖରେ ଯାହା କିଛି ସୁଖ ଅଛି, ତାହା ଯଦି ଅନ୍ୟ ଲୋକଙ୍କୁ ତୁମେ ଦିଅ ତେବେ ତୁମ ଖାତାରେ କ୍ରେଡ଼ିଟ୍ ହୁଏ, ପୁଣ୍ୟ ବନ୍ଧା ହୁଏ ଏବଂ ଅନ୍ୟକୁ ଯଦି ଦୁଃଖ ଦିଅ ତେବେ ପାପ ବନ୍ଧା ହୁଏ ।

**ପ୍ରଶ୍ନକର୍ତ୍ତା :** ତେବେ ଧର୍ମ କାହାକୁ କୁହାଯାଏ ?

**ଦାଦାଶ୍ରୀ :** ଧର୍ମ ଅର୍ଥାତ ଆତ୍ମଧର୍ମ । ଆତ୍ମାର ନିଜର ଧର୍ମ । ପାପ ଏବଂ ପୁଣ୍ୟ ଉଭୟ ଅହଙ୍କାରର ଧର୍ମ ଅଟେ । ଅହଙ୍କାର ଥିବା ପର୍ଯ୍ୟନ୍ତ ପାପ ଏବଂ ପୁଣ୍ୟ ହୁଏ । ଯେବେ ଅହଙ୍କାର ଯାଏ ସେତେବେଳେ ପାପ ଏବଂ ପୁଣ୍ୟ ଯାଆନ୍ତି, ଏବଂ ଆତ୍ମଧର୍ମ ହୁଏ । ଆତ୍ମାକୁ ଜାଣିବାକୁ ପଡ଼ିବ, ତେବେଯାଇ ଆତ୍ମଧର୍ମ ହେବ ।

## ପୁଣ୍ୟ-ପାପରୁ ଉର୍ଦ୍ଧ୍ୱରେ, ରିୟଲ୍ ଧର୍ମ

ରିଲେଟିଭ୍ ଧର୍ମ କ'ଣ କହେ ? ଭଲ କର ଏବଂ ଖରାପ କର ନାହିଁ । ଭଲ କରିବାଦ୍ୱାରା ପୁଣ୍ୟ ବନ୍ଧା ହୁଏ ଏବଂ ଖରାପ କରିବାଦ୍ୱାରା ପାପ ବନ୍ଧା ହୁଏ ।

ସାରା ଜୀବନର ଖାତା କେବଳ ପୁଣ୍ୟରେ ହିଁ ଭରେ ନାହିଁ । କାହାକୁ ଗାଳି ଦେଲ ତେବେ ପାଞ୍ଚଟଙ୍କା ଉଧାରୀ ଏବଂ ଧର୍ମ କଲ ତେବେ ଶହେ ଟଙ୍କା ଜମା ହୁଏ । ପାପ-ପୁଣ୍ୟର ଯୋଗ-ବିୟୋଗ ହୁଏ ନାହିଁ । ଯଦି ଏପରି ହୁଅନ୍ତା ତେବେ ଏ କରୋଡ଼ପତି ପାପ ଜମା ହେବାକୁ ହିଁ ଦିଅନ୍ତେ ନାହିଁ । ପଇସା ଖର୍ଚ୍ଚ କରି ଉଧାରୀ ଉଡ଼ାଇ ଦିଅନ୍ତେ ।

କିନ୍ତୁ ଏହା ତ ଅସଲ ନ୍ୟାୟ ଅଟେ । ସେଥିରେ ତ ଯେଉଁ ସମୟରେ ଯାହାର ଉଦୟ ଆସେ, ସେତେବେଳେ ତାହା ଭୋଗିବାକୁ ପଡ଼େ । ପୁଣ୍ୟରୁ ସୁଖ ମିଳେ ଆଉ ଯେବେ ପାପର ଫଳ ଉଦୟରେ ଆସେ ସେତେବେଳେ ପିତା ଲାଗେ । ଉଭୟ ଫଳ ଚାଖିବାକୁ ହିଁ ପଡ଼େ ।

ଭଗବାନ କ'ଣ କହନ୍ତି ଯେ, ତୁମକୁ ଯେଉଁ ଫଳ ଚାଖିବା ପୋଷଉଥିବ, ତାହାର ମଞ୍ଜି ବୁଣ । ସୁଖ ପୋଷଉଥିବ ତେବେ ପୁଣ୍ୟର ଏବଂ ଦୁଃଖ ପୋଷଉଥିବ ତେବେ ପାପର ମଞ୍ଜି ବୁଣ, ମାତ୍ର ଉଭୟ ରିଲେଟିଭ୍ ଧର୍ମ ଅଟେ, ରିୟଲ୍ ନୁହେଁ ।

ରିୟଲ୍ ଧର୍ମରେ, ଆତ୍ମଧର୍ମରେ ତ ପୁଣ୍ୟ ଏବଂ ପାପ ଉଭୟରୁ ମୁକ୍ତି ଦରକାର । ରିଲେଟିଭ୍ ଧର୍ମରୁ ଭୌତିକ ସୁଖ ମିଳେ ଏବଂ ମୋକ୍ଷ ଆଡ଼କୁ ଅଗ୍ରସର ହୁଏ, ଯେବେକି ରିୟଲ୍ ଧର୍ମରୁ ମୋକ୍ଷ ମିଳେ । ଏଠି 'ମୋ' ପାଖରେ ରିୟଲ୍ ଧର୍ମ ଅଛି । ତାହାଦ୍ୱାରା ସିଧା ମୋକ୍ଷ ମିଳିଯାଏ । ଏଠାରେ ମୋକ୍ଷସୁଖ ଅନୁଭବ ହୁଏ । ଏଠାରେ ଆଧି(ମାନସିକ ଦୁଃଖ), ବ୍ୟାଧି, *ଉପାଧି* (ବାହ୍ୟ ଦୁଃଖ, ବାହାରୁ ଆସୁଥିବା ଦୁଃଖ)ରୁ ମୁକ୍ତି ମିଳିଯାଏ ଏବଂ ନିରନ୍ତର ସମାଧି ରହେ । ନିରାକୁଳତା ଉତ୍ପନ୍ନ ହୁଏ । ଏଠି ତ ଆତ୍ମା ଏବଂ ପରମାତ୍ମାର କଥା ହୋଇଥାଏ ।

## ପରମାଣୁ ସ୍ୱୟଂ ଫଳିଭୂତ ସୁଖ-ଦୁଃଖରେ

**ପ୍ରଶ୍ନକର୍ତ୍ତା :** ପାପ ଏବଂ ପୁଣ୍ୟର ବିଭାଗ କିଏ ତିଆରି କଲେ ?

**ଦାଦାଶ୍ରୀ :** କେହି କରି ନାହାନ୍ତି ।

**ପ୍ରଶ୍ନକର୍ତ୍ତା :** ଏହା ପାପ ଅଟେ, ଏହା ପୁଣ୍ୟ ଅଟେ ସେସବୁ ବୁଦ୍ଧି କହେ, ଆତ୍ମାକୁ ତ ପାପ-ପୁଣ୍ୟ କିଛି ନାହିଁ ନା ?

**ଦାଦାଶ୍ରୀ :** ନା, ଆତ୍ମାକୁ ନାହିଁ । ସାମ୍ନାବାଲାକୁ ଦୁଃଖ ହୁଏ ସେପରି ବାଣୀ ଯଦି ଆମେ କହିବା ନା, ସେତେବେଳେ ସେ ବାଣୀ ହିଁ ନିଜେ ପରମାଣୁକୁ ଆକର୍ଷିତ କରେ । ସେହି ସବୁ ପରମାଣୁକୁ ଦୁଃଖର ରଙ୍ଗ ଲାଗିଯାଏ, ପୁଣି ସେହି ପରମାଣୁ ଯେବେ ଫଳ ଦେବାକୁ ଲାଗନ୍ତି, ସେତେବେଳେ କେବଳ ଦୁଃଖ ହିଁ ଦିଅନ୍ତି ସେମାନେ । ବାକି ମଝିରେ କାହାର କିଛି ଗୋଳିଆଘାଣ୍ଟ ହିଁ ନାହିଁ ।

## ସେଥିରେ ଉତ୍ତରଦାୟିତ୍ୱ କାହାର ?

**ପ୍ରଶ୍ନକର୍ତ୍ତା :** ଜଣେ ବ୍ୟକ୍ତିକୁ ଲକ୍ଷ୍ମୀ ଏବଂ ଜଣେ ବ୍ୟକ୍ତିକୁ ଦାରିଦ୍ର୍ୟ, ତାହା କେଉଁ ଆଧାରରେ ଆସେ ? ସମସ୍ତେ ମନୁଷ୍ୟରେ ହିଁ ଜନ୍ମ ପାଇଛନ୍ତି, ତଥାପି ?

**ଦାଦାଶ୍ରୀ :** ତାହା ଏପରି ଅଟେ, ଆମର ଏ ଯେଉଁ ଜନ୍ମ ହୁଏ ନା, ତାହା ଇଫେକ୍ଟ ଅଟେ । ଇଫେକ୍ଟ ଅର୍ଥାତ ପୂର୍ବ ଜନ୍ମରେ ଯେଉଁ କଜେଜ୍ (causes) କରିଥିଲେ, ତାହାର ଏହା ଫଳ ଅଟେ । ଅର୍ଥାତ ଯେତେ ପୁଣ୍ୟ ଥାଏ, ସେହି ପୁଣ୍ୟଦ୍ୱାରା କ'ଣ କ'ଣ ହୁଏ ? ତେବେ କହିବା, ସେଥିରେ ସଂଯୋଗ ସବୁ ଭଲ ମିଳିଯାଏ ତେଣୁ ସାହାଯ୍ୟ ହିଁ କରିଚାଲନ୍ତି । ବଙ୍ଗଳା ତିଆରି କରିବାର ଥିବ ତେବେ ବଙ୍ଗଳା ହୁଏ, ଗାଡ଼ି ମିଳେ ! ଆଉ ପାପ ଖରାପ ସଂଯୋଗ ଆଣି ବଙ୍ଗଳାର ନିଲାମୀ କରାଏ । ଏଣୁ ନିଜ କର୍ମର ହିଁ ଫଳ ଅଟେ । ସେଥିରେ ଭଗବାନଙ୍କର କୌଣସି ଦଖଲ ନାହିଁ ! ୟୁ ଆର୍ ହୋଲ୍ ଏଣ୍ଡ୍ ସୋଲ୍ ରେସ୍ପନ୍ସିବଲ୍ ଫର୍ ୟୋର୍ ଲାଇଫ୍ ! ଗୋଟିଏ ଲାଇଫ୍ ନୁହେଁ, ଅନେକ ଲାଇଫ୍ ପାଇଁ ଏଥିରେ ଭଗବାନଙ୍କ ଦଖଲ ନାହିଁ । ବିନା କାରଣରେ ଲୋକେ ଭଗବାନଙ୍କ ପଛରେ ପଡ଼ିଛନ୍ତି ।

## ପ୍ରକାର, ପୁଣ୍ୟ-ପାପର

ଜଗତରେ ଆତ୍ମା ଏବଂ ପରମାଣୁ, କେବଳ ଏହି ଦୁଇଟି ହିଁ ଅଛି । କାହାକୁ ଶାନ୍ତି ଦେଇଥିବ, ସୁଖ ଦେଇଥିବ ତେବେ ପୁଣ୍ୟର ପରମାଣୁ ଏକତ୍ରିତ ହୁଅନ୍ତି ଆଉ କାହାକୁ ଦୁଃଖ ଦେଇଥିବ ତେବେ ପାପର ପରମାଣୁ ଏକତ୍ରିତ ହୁଅନ୍ତି । ପୁଣି ସେମାନେ ହିଁ କାମୁଡ଼ନ୍ତି । ଇଚ୍ଛା ଅନୁସାରେ ହୁଏ, ତାହା ପୁଣ୍ୟ ଏବଂ ଇଚ୍ଛା ବିରୁଦ୍ଧରେ ହୁଏ, ତାହା ପାପ । ପାପ ଦୁଇ ପ୍ରକାରର । ଗୋଟିଏ ପାପାନୁବନ୍ଧୀ ପାପ, ଅନ୍ୟଟି ପୁଣ୍ୟାନୁବନ୍ଧୀ ପାପ ଏବଂ ପୁଣ୍ୟ ଦୁଇ ପ୍ରକାରର, ଗୋଟିଏ ପାପାନୁବନ୍ଧୀ ପୁଣ୍ୟ, ଅନ୍ୟଟି ପୁଣ୍ୟାନୁବନ୍ଧୀ ପୁଣ୍ୟ ।

## ପାପାନୁବନ୍ଧୀ ପାପ

ପାପାନୁବନ୍ଧୀ ପାପ ଅର୍ଥାତ ଏବେ ପାପ ଭୋଗୁଥାଏ ଏବଂ ପୁଣି ପାପର ନୂଆ ଅନୁବନ୍ଧ ବାନ୍ଧୁଥାଏ । କାହାକୁ ଦୁଃଖ ଦିଏ ଏବଂ ପୁଣି ଖୁସି ହୁଏ ।

## ପୁଣ୍ୟାନୁବନ୍ଧୀ ପାପ

ପୁଣ୍ୟାନୁବନ୍ଧୀ ପାପ ଅର୍ଥାତ ପୂର୍ବର ପାପ କାରଣରୁ ଏବେ ଦୁଃଖ (ପାପ) ଭୋଗୁଥାଏ କିନ୍ତୁ ନୀତି ଏବଂ ଉଚ୍ଚ ସଂସ୍କାର କାରଣରୁ ପୁଣ୍ୟର ଅନୁବନ୍ଧ ବାନ୍ଧେ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ଦୁଃଖ ଉପକାରୀ ଅଟେ ନା ?

**ଦାଦାଶ୍ରୀ :** ନା, ଯାହାକୁ 'ମୁଁ ଶୁଦ୍ଧାତ୍ମା ଅଟେ' ଏପରି *ଭାନ୍* (ଜ୍ଞାନ) ହୋଇ ସାରିଛି ତା'ପାଇଁ ଦୁଃଖ ଉପକାରୀ ଅଟେ, ନହେଲେ ଦୁଃଖରୁ ଦୁଃଖ ହିଁ ଜନ୍ମ ନିଏ । ଦୁଃଖରେ ତ ଦୁଃଖର ହିଁ ଭାବ ଆସେ । ଏବେ ପୁଣ୍ୟାନୁବନ୍ଧୀ ପାପବାଲା ଜୀବ କମ ଅଛନ୍ତି । ଅଛନ୍ତି ନିଶ୍ଚିତ କିନ୍ତୁ ସେମାନଙ୍କୁ ମଧ୍ୟ ଦୂଷମକାଳ ବାଧକ ଅଟେ । କାରଣ ଏହି ପାପ ବାଧକ ଅଟେ । ପାପ ଅର୍ଥାତ କ'ଣ ଯେ ସଂସାର ବ୍ୟବହାର ଚଲାଇବାରେ ଅସୁବିଧା ଆସେ ତାହା ପାପ କୁହାଯାଏ । ଅର୍ଥାତ ବ୍ୟାଙ୍କରେ ବଢ଼ିବା କଥା ତ ଛାଡ଼ି ଦିଅ କିନ୍ତୁ ଏହି ନିତିଦିନିଆ ବ୍ୟବହାର ଚଲାଇବା ପାଇଁ ମଧ୍ୟ କିଛି ନା କିଛି ଅସୁବିଧା ଆସି ଚାଲିଥାଏ । ଏହି ଅସୁବିଧା ଆସେ ତଥାପି ମନ୍ଦିର ଯାଏ, ଧର୍ମର ବିଚାର ଆସେ, ତାହାକୁ ପୁଣ୍ୟାନୁବନ୍ଧୀ ପାପ କୁହାଯାଏ । ପୁଣ୍ୟ ବାନ୍ଧିବ କିନ୍ତୁ ଏହି ଦୂଷମକାଳ ଏପରି ଅଟେ ଯେ ଏହି ପାପ ଯୋଗୁଁ ଟିକିଏ ଅସୁବିଧା ଆସେ, ଏଣୁ ବାସ୍ତବରେ ଯେପରି ହେବାକଥା ସେପରି ପୁଣ୍ୟବନ୍ଧନ ହୁଏ ନାହିଁ । ଏବେ ତ ସହଜରେ (ରୋଗ) ସଂକ୍ରମଣ ହୋଇଯାଉଛି ନା ! ମନ୍ଦିର ବାହାରେ ଯଦି ଜୋତା ରଖିଥିବ ତେବେ ଅନ୍ୟକୁ ପଚାରେ ଯେ କ'ଣ ଭାଇ ଏଠି କାହିଁକି ଜୋତା ରଖୁଛ ? ସେତେବେଳେ ସେ କହେ ଯେ ସେପଟୁ ଜୋତା ଚୋରି ହୋଇଯାଉଛି, ସେଥିପାଇଁ ଏଠି ରଖୁଛି । ସେତେବେଳେ ଆମ ମନରେ ବି ବିଚାର ଆସେ ଯେ ସେପଟୁ ନେଇଯାଉଛନ୍ତି, ସେଥିପାଇଁ ଦର୍ଶନ ସମୟରେ ବି ଚିତ୍ତ ଠିକଣାରେ ରହେ ନାହିଁ !

## ପାପାନୁବନ୍ଧୀ ପୁଣ୍ୟ

ପୂର୍ବର ପୁଣ୍ୟରୁ ଆଜି ସୁଖ ଭୋଗେ କିନ୍ତୁ ଭୟଙ୍କର ପାପର ଅନୁବନ୍ଧ ବାନ୍ଧେ । ଏବେ ସବୁଠି ପାପାନୁବନ୍ଧୀ ପୁଣ୍ୟ ଅଛି । କେଉଁ ସେଠ୍‌ର ଯଦି ଏପରି ବଙ୍ଗଳା ଥିବ ତେବେ ସୁଖରେ ବଙ୍ଗଳାରେ ରହି ପାରେ ନାହିଁ । ସେଠ୍ ସାରା ଦିନ ପଇସା ପାଇଁ ବାହାରେ ଥାଏ । ଯେବେକି ସେଠାଣୀ ମୋହ ବଜାରରେ ସୁନ୍ଦର ଶାଢ଼ୀ ପଛରେ ଥାଏ ଏବଂ ସେଠ୍‌ର ଝିଅ ଗାଡ଼ି ନେଇ ବୁଲିବା ପାଇଁ ବାହାରି ଥାଏ । ଚାକର ଏକୁଟିଆ ଘରେ

ଥାଆନ୍ତି ଏବଂ ପୁରା ବଙ୍ଗଳା ଛାରଖାର ହୋଇଯାଏ । ପୁଣ୍ୟ ଆଧାରରେ ସବୁକିଛି, ବଙ୍ଗଳା ମିଳିଲା, ଗାଡ଼ି ମିଳିଲା, ଫ୍ରିଜ୍ ମିଳିଲା । ଏପରି ପୁଣ୍ୟ ଥିବ ତଥାପି ପାପର ଅନୁବନ୍ଧ ବାନ୍ଧନ୍ତି, ସେପରି ନମୁନା ଥାଆନ୍ତି । ଲୋଭ-ମୋହରେ ସମୟ ଯାଏ ଏବଂ ଭୋଗି ପାରନ୍ତି ବି ନାହିଁ । ପାପାନୁବନ୍ଧୀ ପୁଣ୍ୟବାଲା ଲୋକେ ତ ବିଷୟର ଲୁଣ୍ଠନ ହିଁ କରନ୍ତି ।

ସେଥିପାଇଁ ତ ବଙ୍ଗଳା ଅଛି, ଗାଡ଼ି ଅଛି, ୱାଇଫ୍ ଅଛି, ପିଲା ଅଛନ୍ତି, ସବୁକିଛି ଅଛି କିନ୍ତୁ ସାରା ଦିନ ହାୟ, ହାୟ, ହାୟ, ହାୟ, ପଇସା କେଉଁଠୁ ଆଣିବି ? ଏହିପରି ଦିନସାରା ନିରୋଳା ପାପ ହିଁ ବାନ୍ଧି ଚାଲିଥାଏ । ଏହି ଜନ୍ମରେ ପୁଣ୍ୟ ଭୋଗେ ଏବଂ ଆଗାମୀ ଜନ୍ମର ପାପ ବାନ୍ଧୁଥାଏ । ସାରାଦିନ ଧାଁ-ଦୌଡ଼ ଧାଁ-ଦୌଡ଼ ଏବଂ କିପରି ? ବାୟ (କିଣ), ବରୋ (ଉଧାର ନିଅ), ଏଣ୍ଡ୍ ଷ୍ଟୀଲ୍ (ଏବଂ ଚୋରେଇ ନିଅ) । କିଛି ନିୟମ ନାହିଁ । ବାୟ ତ ବାୟ, ନହେଲେ ବରୋ, ନହେଲେ ଷ୍ଟୀଲ୍ । କୌଣସି ବି ପ୍ରକାରେ ତାହା ହିତକାରୀ ନୁହେଁ ।

ଏବେ ତୁମ ସହର ଆଖପାଖରେ ପୁଣ୍ୟ ବହୁତ ଦେଖାଯାଉଛି । ସେ ସବୁ ପାପାନୁବନ୍ଧୀ ପୁଣ୍ୟ ଅଟେ । ଅର୍ଥାତ ପୁଣ୍ୟ ଅଛି, ବଙ୍ଗଳା ଅଛି, ଗାଡ଼ି ଅଛି, ଘରେ ସବୁ ସୁବିଧା ଅଛି, ସେସବୁ ପୁଣ୍ୟର ଆଧାରରେ ଅଛି, କିନ୍ତୁ ସେହି ପୁଣ୍ୟ କିପରି ? ସେହି ପୁଣ୍ୟରୁ ଖରାପ ବିଚାର ଆସେ ଯେ କାହାର ନେଇଯିବି ? କେଉଁଠୁ ଲୁଟିନେବି ? କେଉଁଠୁ ଏକାଠି କରିବି ? କାହାର ଭୋଗିନେବି ? ଅର୍ଥାତ *ଅଣହକ୍କ* ର ଭୋଗିବା ପାଇଁ ପ୍ରସ୍ତୁତି ଥାଏ, *ଅଣହକ୍କ* ର ଲକ୍ଷ୍ମୀ ମଧ୍ୟ ଛଡ଼େଇ ନିଅନ୍ତି, ତାହା ପାପାନୁବନ୍ଧୀ ପୁଣ୍ୟ ଅଟେ । ମନୁଷ୍ୟତ୍ୱ ଅର୍ଥାତ ମୋକ୍ଷ ଯିବାର ଟାଇମ୍ ମିଳିଛି, ଯେବେକି ଏ ତ ଏକାଠି କରିବାରେ ଲାଗିଛି, ତାହା ପାପାନୁବନ୍ଧୀ ପୁଣ୍ୟ ଅଟେ । ସେଥିରେ କେବଳ ପାପ ହିଁ ବାନ୍ଧି ହେଉଥାଏ, ଅର୍ଥାତ ତାହା ଭଟକାଇ ଦିଏ ଏପରି ପୁଣ୍ୟ ଅଟେ ।

କେତେ ଲୋକ ତ ଯେପରି ଛୋଟ ଷ୍ଟେଟ୍‌ର ମୁଖିଆ ଥାଆନ୍ତି ନା, ସେପରି ଅଏସ-ଆରାମରେ ଜୀବନ ବିତାନ୍ତି । କୋଟିକୋଟି ଟଙ୍କାର ଫ୍ଲାଟ୍‌ରେ ରହନ୍ତି । କିନ୍ତୁ ଜ୍ଞାନୀ କ'ଣ ଦେଖୁଥିବେ ? ଜ୍ଞାନୀଙ୍କୁ କରୁଣା ଆସେ ବିଚରାମାନଙ୍କ ପାଇଁ ! ଯେତେ କରୁଣା ବୋରୀବଲୀ(ମୁମ୍ବାଇର ମଧ୍ୟମବର୍ଗୀୟ ଅଞ୍ଚଳ)ବାଲାଙ୍କ ଉପରେ ଆସେ ନାହିଁ, ସେତେ କରୁଣା ଏମାନଙ୍କ ଉପରେ ଆସେ । ଏପରି କାହିଁକି ?

**ପ୍ରଶ୍ନକର୍ତ୍ତା :** କାରଣ ଏହା ତ ପାପାନୁବନ୍ଧୀ ପୁଣ୍ୟ ଅଟେ ସେଥିପାଇଁ ।

**ଦାଦାଶ୍ରୀ :** ପାପାନୁବନ୍ଧୀ ପୁଣ୍ୟ ତ ଅଟେ, କିନ୍ତୁ ଓହୋହୋ! ଏମାନଙ୍କର ବରଫ ପରି ପୁଣ୍ୟ। ଯେପରି ବରଫ ତରଳେ, ସେହିପରି ନିରନ୍ତର ତରଳି ଚାଲିଥାଏ, ତାହା ଜ୍ଞାନୀଙ୍କୁ ଦେଖାଯାଏ ଯେ ଏହା ତରଳୁ ଅଛି! ମାଛ ଯେପରି ଛଟପଟ ହୁଏ, ସେପରି ଛଟପଟ ହେଉଛନ୍ତି! ଏହା ଅପେକ୍ଷା ତ ବୋରୀବଲୀବାଲାଙ୍କର ପାଣି ପରି ପୁଣ୍ୟ, ସେଥିରେ ଆଉ ତରଳିବାର ରହିଲା କ'ଣ? କିନ୍ତୁ ଏହା ତ ତରଳୁ ଅଛି।

ସେ ଭୋଗିବାବାଲାଙ୍କୁ ଜଣା ନାହିଁ ଏବଂ ସେଥିପାଇଁ ସବୁ *କଢ଼ାପା-ଅଜମ୍ପା* (ଇର୍ଷା, କ୍ଲେଶ, ଅଶାନ୍ତି, ଭୟ) ହେଉଛି, ଭୋଗିବାର ରହିଲା ହିଁ କେଉଁଠି? ଏବେ ଏହି କଳିଯୁଗରେ ଏ ଭୋଗିବା କିପରି? ଓଲଟା ଏହା ତ କୁରୂପ ଦେଖାଯାଉଛି। ଆଜିଠୁ ଷାଠିଏ ବର୍ଷ ପୂର୍ବେ ଯେଉଁ ରୂପ ଥିଲା, ସେପରି ତ ରୂପ ହିଁ ନାହିଁ ଏବେ। ଶାନ୍ତିବାଲା ମୁମ୍ବାଇ ଥିଲା।

ଏବେ ସେହି ରୂପ ହିଁ ନାହିଁ। ଷାଠିଏ ବର୍ଷ ପୂର୍ବେ ତ ଯଦି ମରୀନ୍‌ଲାଇନ୍ସରେ ରହୁଥିବ ନା, ତେବେ ଦେବଗତି ପରି ଲାଗୁଥିଲା। ଏବେ ତ ସେଠାରେ ବିଚଳିତ ଦେଖାଯାଉଛନ୍ତି ସମସ୍ତେ। ଦିନସାରା ଆକୁଳିତ ଏବଂ ବିବ୍ରତ, ଏପରି ଦେଖାଯାଉଛନ୍ତି ଲୋକମାନେ। ସେ ସମୟରେ ତ ସକାଳେ ପ୍ରଥମେ ବସି ପେପର ପଢୁଥାନ୍ତି, ତେବେ ଏପରି ଲାଗେ ଯେପରି ସବୁ ଦେବୀ-ଦେବତା ପେପର ପଢୁଛନ୍ତି। *କଢ଼ାପା* ନାହିଁ, *ଅଜମ୍ପା* ନାହିଁ। ସକାଳୁ ପ୍ରଥମେ ମୁମ୍ବାଇ ସମାଚାର ଆସିଥାଏ, ଅନ୍ୟ ପେପର ବି ଥିଲା, କିନ୍ତୁ ସେସବୁ ନାମ ଲୋପ ପାଇଗଲାଣି। ମୁଁ ମଧ୍ୟ ମରୀନ୍‌ଲାଇନ୍ସରେ ଓହ୍ଲାଉଥିଲି। କିନ୍ତୁ ସେତେବେଳେ ତ ଲୋକଙ୍କୁ ଶାନ୍ତି ବହୁତ ଥିଲା! ଏତେ ହାଏ-ହାଏ ନଥିଲା। ଏତେ ଲୋଭ ନଥିଲା, ଏତେ ମୋହ ନଥିଲା, ଏତେ ତୃଷ୍ଣା ନଥିଲା ଏବଂ ଶୁଦ୍ଧ ଘିଅରେ ତ ଶଙ୍କା ହିଁ କରିବାକୁ ପଡୁ ନଥିଲା, ଶଙ୍କା ହିଁ ଆସୁ ନଥିଲା। ଏବେ ତ ଯଦି ଶୁଦ୍ଧ ଆଣିବା ପାଇଁ ଯିବା ତେବେ ମଧ୍ୟ ମିଳେ ନାହିଁ।

ମଲବାର୍ ହିଲ୍(ମୁମ୍ବାଇର ଏକ ସମୃଦ୍ଧ ଆବାସିକ କ୍ଷେତ୍ର) ସମାନ ପୁଣ୍ୟ ଥିବ, କିନ୍ତୁ ବରଫର ପାହାଡ଼ ଅଟେ ସେହି ପୁଣ୍ୟ। ବଡ଼ ମଲବାର୍ ହିଲ୍ ସମାନ ବରଫ ଥିବ, କିନ୍ତୁ ତାହା ଦିନକୁ ଦିନ କ'ଣ ହେବ? ଚବିଶ ଘଣ୍ଟା ତରଳି ଚାଲିବ ନିରନ୍ତର। କିନ୍ତୁ ନିଜକୁ ଜଣା ନାହିଁ, ଏହି ମଲବାର ହିଲ୍‌ରେ ଅଥବା ଏପରି ସବୁ ଜାଗାରେ ରହୁଥିବା ଲୋକଙ୍କୁ, ଟପ୍‌କ୍ଲାସ୍ ଲୋକଙ୍କୁ ଏହା ଜଣା ନାହିଁ ଯେ ଆମର କ'ଣ ହେଉଅଛି? ଦିନ-ରାତି ପୁଣ୍ୟ ତରଳି ଚାଲିଥାଏ, ଏହା ତ କରୁଣା ରଖିବା ପରି ଦଶା ଅଟେ! ଏଠି କ'ଣ

ଖାଉ-ଖାଉ, କ'ଣ ଖାଇବାକୁ ପଡ଼ିବ, ତାହା ଜଣା ନାହିଁ ସେଥିପାଇଁ ଏସବୁ ଚାଲିଛି । ପାପାନୁବନ୍ଧୀ ପୁଣ୍ୟ ଅଟେ । ଦିନସାରା ହାଏ ପଇସା, ହାଏ ପଇସା ! କେଉଁଠୁ ପଇସା ଠୁଳ କରିବି, ଦିନସାରା କେବଳ ସେହି ବିଚାରରେ, କେଉଁଠୁ ବିଷୟର ସୁଖ ଭୋଗିନେବି, କିଛି ଏମିତି କରିବି, ସେମିତି କରିବି, ପଇସା ! ହାଏ, ହାଏ, ହାଏ, ହାଏ । ଆଉ ଦେଖ ବଡ଼-ବଡ଼ ପୁଣ୍ୟର ପାହାଡ଼ ତରଳିବାକୁ ଲାଗିଛି । ସେ ପୁଣ୍ୟ ଦିନେ ସରିଯିବ, ପୁଣି ଯେମିତି ଥିଲେ ସେମିତି, ଦୁଇ ହାତ ଖାଲିକୁ ଖାଲି । ପୁଣି ଚାରିଗୋଡ଼ିଆରେ ଯାଇ ଠିକଣା ରହିବ ନାହିଁ । ସେଥିପାଇଁ ଜ୍ଞାନୀ କରୁଣା ରଖନ୍ତି ଯେ ଆରେରେରେ ! ଏହି ଦୁଃଖରୁ ଯଦି ବାହାରିବେ ତେବେ ଭଲ । କିଛି ଭଲ ସଂଯୋଗ ଯଦି ମିଳିଯିବ ତେବେ ଭଲ । ଦେଖ ଏ ଭାଇଙ୍କୁ ଭଲ ସଂଯୋଗ ମିଳିଯାଇଛି । ଏ ସେଠ୍‌ମାନେ ତ କେବେ ସେଠୁ ମୁକୁଳିବେ ଏବଂ କେବେ ଏଠାକୁ ଆସିଯିବେ, ଏପରି ମୋର ଇଚ୍ଛା ନିଶ୍ଚିତ ଅଛି କିନ୍ତୁ କିଛି ମେଳ ହେଉ ନାହିଁ ଆଉ ଯାହାର ମେଳ ହୁଏ ସେମାନେ ଆସନ୍ତି ମଧ୍ୟ ।

**ପ୍ରଶ୍ନକର୍ତ୍ତା :** ଦାଦା, ଅନ୍ୟସବୁ ପଢ଼ିବା ବାଲାଙ୍କୁ ମୋକ୍ଷର ଅନ୍ୟ କଥା ବୁଝା ପଡ଼େ ନାହିଁ କିନ୍ତୁ ଏହି ଦୁଃଖର କଥା ତ ବହୁତ ବୁଝା ପଡ଼ିଯାଏ ।

**ଦାଦାଶ୍ରୀ :** ତାହା ତ ବୁଝା ପଡ଼ିବ, ସମସ୍ତଙ୍କୁ ବୁଝା ପଡ଼ିବ । ଏହା ଦୀପ ପରି (ସ୍ପଷ୍ଟ) କଥା ଅଟେ ! ଆରେ, ମୋକ୍ଷର କଥା ତ ଦୂରରେ ରଖ, କିନ୍ତୁ ଦୁଃଖର ନିବାରଣ ତ ହେଲା ଆଜି ! ସଂସାରୀ ଦୁଃଖର ଅଭାବ ତ ହେଲା ! ଏବଂ ତାହା ହିଁ ମୁକ୍ତିର ପ୍ରଥମ ସଙ୍କେତ । ଦୁଃଖମୁକ୍ତ ହେଲେ, ସାଂସାରିକ ଦୁଃଖରୁ ।

## ଓଭରଡ୍ରାଫ୍ଟ ର ବ୍ୟୟ ଆଡ଼ମ୍ବରରେ !

ଚାରି ଘରର ମାଲିକ, କିନ୍ତୁ ଘରେ ପାଞ୍ଚଟଙ୍କା ନଥାଏ ଆଉ ଭାବନଗର(ଗୁଜରାଟର ଏକ ସହର)ର ରାଜା ପରି ପ୍ରତିପତ୍ତି ଥାଏ ! ତେବେ ସେହି ଅହଙ୍କାରର କ'ଣ କରାଯିବ ?

**ପ୍ରଶ୍ନକର୍ତ୍ତା :** ଦାଦା, କିନ୍ତୁ ଅନେକ ଥର ବ୍ୟବହାରରେ ଏପରି ହୁଏ ଯେ ମନୁଷ୍ୟ ଏପରି ସବୁ ଯେଉଁ ରଖେ, ତା'କୁ ଏପରି ସବୁ ମିଳିଯାଏ ।

**ଦାଦାଶ୍ରୀ :** ମିଳିଯାଏ, କିନ୍ତୁ ସବୁ ପାପ ବାନ୍ଧିହୋଇ ମିଳେ । ତାହାର ନିୟମ ହିଁ ଏପରି ଅଟେ, ତୋର ସବୁକିଛି ଖର୍ଚ୍ଚ କରି, ତୋର କାଉଣ୍ଟରୱେଟ୍ ରଖି ତୁ ଏହା ନେଉଛୁ ଆଉ ଯଦି ଆଜି ନାହିଁ ତେବେ ଓଭରଡ୍ରାଫ୍ଟ ନିଏ । ସେହି ଓଭରଡ୍ରାଫ୍ଟ ନେଇ

ପୁଣି ମନୁଷ୍ୟରୁ ପଶୁଗତିକୁ ଯାଏ । ଝଟପଟ କରି ନେଇଥିବା କାମର ନୁହେଁ, ତାହା ତ ଆମ ପୁଣ୍ୟର ସହଜରୂପେ ମିଳିଥିବା ଉଚିତ ।

ସେଥିପାଇଁ ମିଳିଯାଏ, କିନ୍ତୁ ସମସ୍ତେ ଓଭରଡ୍ରାଫ୍ଟ ନିଅନ୍ତି । ମନରୁ ଚୋରିର ବିଚାର ଯାଏ ନାହିଁ, ମିଛର ବିଚାର, କପଟର ବିଚାର ଯାଏ ନାହିଁ, ପ୍ରପଞ୍ଚର ବିଚାର ଯାଏ ନାହିଁ । ପୁଣି କ'ଣ, ନିରୋଳା ପାପ ହିଁ ବାନ୍ଧି ହେବ ନା ? ଏ ସବୁ ତ ନହେବା ଉଚିତ, ସବୁ ମିଳିଗଲେ ମଧ୍ୟ ! ସେଥିପାଇଁ ମୁଁ ତ ଭେଖ(ସନ୍ୟାସ) ନେବାପାଇଁ ପ୍ରସ୍ତୁତ ଥିଲି ଯେ, ଏହିପରି ଯଦି ଦୋଷ ବାନ୍ଧି ହେଉଥିବ ତେବେ ସନ୍ୟାସ ନେବା ଭଲ । ଭୟଙ୍କର *ଉପାଧି* ସବୁ, ଏତେ ତାପରେ ସିଝିଲେ ! ଅଜ୍ଞାନତାରେ ତ ବହୁତ ଅଭିଜ୍ଞ ବ୍ୟକ୍ତି, ଗୋଟିଏ ଘଣ୍ଟା ଯଦି ସିଝେ, ତେବେ ସେହି ତାପ କାରଣରୁ ମନରେ ଏପରି ହୁଏ ଯେ ଆରେ, ଏବେ କିଛି ଦରକାର ନାହିଁ । ମୋଟା ବୁଦ୍ଧିବାଲାକୁ ତାପ କମ ବୁଝାପଡ଼େ, କିନ୍ତୁ ସୂକ୍ଷ୍ମ ବୁଦ୍ଧିବାଲାକୁ ତାପ କିପରି ସହନ ହେବ ? ତାହା ତ ଆଶ୍ଚର୍ଯ୍ୟ ଅଟେ !

## ପୁଣ୍ୟାନୁବନ୍ଧୀ ପୁଣ୍ୟ

ଗୋଟିଏ ପୁଣ୍ୟ ଏପରି ଅଛି ଯାହା ଭଟକାଏ ନାହିଁ, ସେପରି ପୁଣ୍ୟ ଏହି କାଳରେ ବହୁତ କମ ଥାଏ ଏବଂ ତାହା ଏବେ ଅଳ୍ପ ସମୟ ପରେ ଶେଷ ହୋଇଯିବ । ତାହା ପୁଣ୍ୟାନୁବନ୍ଧୀ ପୁଣ୍ୟ କୁହାଯାଏ । ଯେଉଁ ପୁଣ୍ୟକର୍ମ କରେ, ଭଲ କର୍ମ ଏବଂ ସେଥିରେ ଯଦି ସାଂସାରିକ ହେତୁ(ଉଦ୍ଦେଶ୍ୟ) ନଥିବ, ସାଂସାରିକ କୌଣସି ବି ଇଚ୍ଛା ନଥିବ, ସେହି ସମୟରେ ଯେଉଁ ପୁଣ୍ୟ ବାନ୍ଧେ, ତାହା ପୁଣ୍ୟାନୁବନ୍ଧୀ ପୁଣ୍ୟ ।

ପୁଣ୍ୟ ଭୋଗନ୍ତି ଏବଂ ସାଥିରେ ଆତ୍ମକଲ୍ୟାଣ ପାଇଁ ଅଭ୍ୟାସ, କ୍ରିୟା କରନ୍ତି । ପୁଣ୍ୟ ଭୋଗନ୍ତି ଏବଂ ନୂଆ ପୁଣ୍ୟ ବାନ୍ଧନ୍ତି, ଯାହାଦ୍ୱାରା ବୈଭବ ସହ ମୋକ୍ଷଫଳ ମିଳେ । ପୁଣ୍ୟାନୁବନ୍ଧୀ ପୁଣ୍ୟ କାହାକୁ କୁହାଯାଏ ଯେ ଆଜି ପୁଣ୍ୟ ଥାଏ, ମଜାରେ ସୁଖ ଭୋଗୁଥିବେ, କୌଣସି ଅସୁବିଧା ପଡୁ ନଥିବ ଏବଂ ପୁଣି ଧର୍ମର ଏବଂ ଧର୍ମର ହିଁ ସାରାଦିନ କରୁଥାନ୍ତି, ତାହା ପୁଣ୍ୟାନୁବନ୍ଧୀ ପୁଣ୍ୟ ଅଟେ । ସେପରି ବିଚାର ଆସେ, କେବଳ ଧର୍ମର ହିଁ, ସତସଙ୍ଗରେ ହିଁ ରହିବାର ବିଚାର ଆସେ । ଆଉ ଯେଉଁ ପୁଣ୍ୟରୁ ସୁଖ-ସୁବିଧା ବେଶୀ ନଥିବ, କିନ୍ତୁ ଉଚ୍ଚ ବିଚାର ଆସେ ଯେ କିପରି କାହାକୁ ଦୁଃଖ ନହେଉ ଏପରି ବ୍ୟବହାର କରିବି, ଏପରି ଆଚରଣ କରିବି, ପଛେ ନିଜକୁ ଅଳ୍ପ

ସମସ୍ୟା ହେଉଥାଉ, ସେଥିରେ ଅସୁବିଧା ନାହିଁ, କିନ୍ତୁ କାହାକୁ *ଉପାଧି* ରେ ପକାଇବି ନାହିଁ, ତାହା ପୁଣ୍ୟାନୁବନ୍ଧୀ ପୁଣ୍ୟ କୁହାଯାଏ, ସେଥିପାଇଁ ନୂଆ ଅନୁବନ୍ଧ ମଧ୍ୟ ପୁଣ୍ୟର ହୁଏ ।

**ପ୍ରଶ୍ନକର୍ତ୍ତା :** ପୁଣ୍ୟାନୁବନ୍ଧୀ ପୁଣ୍ୟର ଉଦାହରଣ ଦିଅନ୍ତୁ ।

**ଦାଦାଶ୍ରୀ :** ଆଜି କୌଣସି ବ୍ୟକ୍ତି ପାଖରେ ଗାଡ଼ି-ବଙ୍ଗଳା ସବୁ ସାଧନ ଅଛି, ପତ୍ନୀ ଭଲ, ପିଲାମାନେ ଭଲ, ଚାକର ଭଲ, ଏ ଯାହାକିଛି ଭଲ ମିଳିଛି, ତାହା କ'ଣ କୁହାଯାଏ ? ଲୋକେ କହନ୍ତି, 'ପୁଣ୍ୟଶାଳୀ ଅଟେ ।' ଏବେ ସେ ପୁଣ୍ୟଶାଳୀ କ'ଣ କରୁଛି, ତାହା ଯଦି ଆମେ ଦେଖିବା ତେବେ ସାରା ଦିନ ସାଧୁ-ସନ୍ଥଙ୍କ ସେବା କରୁଛି, ଅନ୍ୟମାନଙ୍କର ସେବା କରୁଛି ଏବଂ ମୋକ୍ଷ ପାଇଁ ପ୍ରସ୍ତୁତି କରୁଛି । ଏମିତି-ସେମିତି କରୁ କରୁ ତା'କୁ ମୋକ୍ଷର ସାଧନ ମଧ୍ୟ ମିଳିଯାଏ । ଏବେ ପୁଣ୍ୟ ଅଛି ଏବଂ ନୂଆ ପୁଣ୍ୟ ବାନ୍ଧୁଛି ଆଉ ଯଦି କମ ପୁଣ୍ୟ ମିଳେ, ତେବେ ମଧ୍ୟ ବିଚାର ପୁଣି ସେହିପରି ହିଁ ଆସେ, 'ମୋକ୍ଷରେ ଯିବାର ଅଛି' ତାହା ପୁଣ୍ୟାନୁବନ୍ଧୀ ପୁଣ୍ୟ । ତୁମେ ମୋତେ ଯେଉଁ ଭେଟିଲ ତାହା ତୁମର କିଛି ପୁଣ୍ୟାନୁବନ୍ଧୀ ପୁଣ୍ୟ ଥିବ, ତାହାର ଆଧାରରେ ଭେଟିଲ । ଅଳ୍ପ ଟିକିଏ ଛିଟା ଏମିତି ପଡ଼ି ଯାଇଥିବ, ନହେଲେ ଭେଟି ହେବ ହିଁ ନାହିଁ ।

ହଠ୍ (ଜିଦ୍)ରୁ କରାଯାଇଥିବା କାମ, ହଠାଗ୍ରହୀ ତପ, ହଠାଗ୍ରହୀ କ୍ରିୟା, ତାହାଦ୍ୱାରା ପାପାନୁବନ୍ଧୀ ପୁଣ୍ୟର ବନ୍ଧନ ହୁଏ । ଯେବେକି ବୁଝିବିଚାରି କରାଯାଇଥିବା ତପ, କ୍ରିୟା, ନିଜର ଆତ୍ମକଲ୍ୟାଣ ହେତୁ ସହିତ କରାଯାଇଥିବା କର୍ମରୁ ପୁଣ୍ୟାନୁବନ୍ଧୀ ପୁଣ୍ୟର ବନ୍ଧନ ହୁଏ ଏବଂ କେଉଁ କାଳରେ ଜ୍ଞାନୀପୁରୁଷ ମିଳିଯାଆନ୍ତି ଏବଂ ମୋକ୍ଷରେ ଯାଏ ।

## ଉଭୟ ଦୃଷ୍ଟି ଭିନ୍ନ-ଭିନ୍ନ

**ପ୍ରଶ୍ନକର୍ତ୍ତା :** ବର୍ତ୍ତମାନ ସମୟରେ ସାମାନ୍ୟ ବ୍ୟକ୍ତିକୁ ଏପରି ଲାଗେ ଯେ ଖରାପ ରାସ୍ତା ଅଥବା ଖରାପ କର୍ମଦ୍ୱାରା ହିଁ ଭୌତିକ ସୁଖ ଓ ସୁବିଧା ମିଳେ, ସେଥିପାଇଁ ତାଙ୍କର ପ୍ରକୃତିର ନ୍ୟାୟ ଉପରୁ ବିଶ୍ୱାସ ଉଠିବାକୁ ଲାଗେ ଏବଂ ଖରାପ କର୍ମ କରିବା ନିମନ୍ତେ ପ୍ରେରିତ ହୁଏ ।

**ଦାଦାଶ୍ରୀ :** ହଁ, ସାମାନ୍ୟ ବ୍ୟକ୍ତିକୁ ସେପରି ସବୁ ଲାଗେ । ଖରାପ ରାସ୍ତା ଏବଂ ଖରାପ କର୍ମ ଦ୍ୱାରା ହିଁ ଭୌତିକ ସୁଖ-ସୁବିଧା ମିଳେ, ତାହା ଏଥିପାଇଁ ଲାଗେ କାରଣ

ଏହା କଳିଯୁଗ ଅଟେ ଏବଂ ଦୁଷମକାଳ ଅଟେ । ଲୋକଙ୍କୁ, ଭୌତିକ ସୁଖ ଏବଂ ସୁବିଧା ପୁଣ୍ୟ ବିନା ମିଳେ ନାହିଁ । କୌଣସି ବି ସୁବିଧା ପୁଣ୍ୟ ବିନା ମିଳେ ନାହିଁ । ଗୋଟିଏ ବି ଟଙ୍କା ବିନା ପୁଣ୍ୟରେ ହାତକୁ ଆସେ ନାହିଁ ।

ପାପାନୁବନ୍ଧୀ ପୁଣ୍ୟ ଏବଂ ପୁଣ୍ୟାନୁବନ୍ଧୀ ପୁଣ୍ୟ, ଉଭୟଙ୍କୁ ଚିହ୍ନିବା ପାଇଁ ନିଜର ବୁଝିବା ଶକ୍ତି ଦରକାର ।

ଏଣୁ ନିଜେ ଭୋଗୁଛି କ'ଣ ? ପୁଣ୍ୟ, ତଥାପି କ'ଣ ବାନ୍ଧୁଛି ? ପାପ ବାନ୍ଧୁଛି । ସେଥିପାଇଁ ଆମକୁ ଏପରି ଲାଗେ ଯେ ଏପରି ପାପର ଖରାପ କର୍ମ କରୁଛି ଏବଂ ସୁଖ କିପରି ଭୋଗୁଛି ? ନା, ଯାହା ଭୋଗୁଛି ତାହା ତ ପୁଣ୍ୟ ଅଟେ, ତାହା ଭୁଲ ନୁହେଁ । ପାପର ଫଳ କେବେ ବି ସୁଖ ହୁଏ ନାହିଁ । ଏହା ତ ନୂଆ ରୂପରେ ତା'ର ଆଗାମୀ ଜୀବନ ସମାପ୍ତ କରୁଅଛି । ସେଥିପାଇଁ ତୁମକୁ ଏପରି ଲାଗେ ଯେ ଏ ବ୍ୟକ୍ତି ଏପରି କାହିଁକି କରୁଛି ?

ଆଉ ପ୍ରକୃତି ତା'କୁ ହେଲ୍ପ ମଧ୍ୟ କରେ । କାରଣ ପ୍ରକୃତି ତା'କୁ ତଳକୁ ନେଇ ଯାଉଛି, ଅଧୋଗତିରେ, ସେଥିପାଇଁ ତା'କୁ ହେଲ୍ପ କରେ । ଆଉ ଯଦି ନୂଆ ଚୋର ହୋଇଥିବ ଏବଂ ଆଜି ପକେଟରେ ହାତ ପୁରାଇଥିବ, ତେବେ ତା'କୁ ଧରା ପକାଇ ଦିଏ ଯେ ଭାଇ ନା, ଏଥିରେ ଯଦି ପଡ଼ିଯିବୁ ତେବେ ତଳକୁ ଚାଲିଯିବୁ । ନୂଆ ଚୋରକୁ ଧରା ପକାଇଦିଏ, କାହିଁକି ? ଉର୍ଦ୍ଧ୍ୱଗତିରେ ନେଇ ଯିବାର ଅଛି । ଆଉ ସେ ଅସଲ ଚୋର, ତା'କୁ ଯିବାକୁ ଦିଏ । ନୀଚ ଗତିରେ ଯାଅ, ବହୁତ ମାଡ଼ ଖାଅ, ନୂଆ-ନୂଆ ଚୋରି କରୁଥିବ ତେବେ ଧରା ପଡ଼ିଯାଏ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ଧରା ପଡ଼ିଯାଏ ।

**ଦାଦାଶ୍ରୀ :** ହଁ, ଆଉ ଅସଲ ଚୋର ଧରା ପଡ଼ନ୍ତି ନାହିଁ । ସରକାର ଏମିତି କରେ, ସେମିତି କରେ, କିନ୍ତୁ ସେମାନେ କେଉଁଥିରେ ବି ଧରା ପଡ଼ନ୍ତି ନାହିଁ । ସେମାନେ କାହାର ବି ଜାଲରେ ଆସନ୍ତି ନାହିଁ । ସମସ୍ତଙ୍କୁ ବିକି ଖାଇଦେବେ ଏପରି ଅଟନ୍ତି ! କେହି କେହି କୁହନ୍ତି ନା, ଇନକମ୍ ଟ୍ୟାକ୍ସ ବାଲାଙ୍କୁ ପକେଟ୍‌ରେ ପୂରାଇ ବୁଲୁଛି । ନିଜ ଉତ୍ତରଦାୟିତ୍ୱରେ କହୁଛି ନା ! ଏସବୁ କ୍ରିୟା ସେ ନିଜ ଉତ୍ତରଦାୟିତ୍ୱରେ କରୁଛି ନା ? କ'ଣ ଆମ ଉତ୍ତରଦାୟିତ୍ୱରେ ?

## ପାପାନୁବନ୍ଧୀ ପୁଣ୍ୟର ଲକ୍ଷ୍ମୀ

ପାପାନୁବନ୍ଧୀ ପୁଣ୍ୟର ଲକ୍ଷ୍ମୀ ମାନେ କ'ଣ ? ସେହି ଲକ୍ଷ୍ମୀ ଯଦି ଆସେ ତେବେ ପୁଣି କେଉଁଠୁ ନେଇଯିବି, କାହାର ନେଇ ଆସିବି, *ଅଣହକ୍କ* ର ଭୋଗିନେବି, *ଅଣହକ୍କ* ର ଛଡ଼ାଇ ନେବି, ଏପରି ସବୁ ପାଶବତାର ବିଚାର ଆସେ। କାହାକୁ ସାହାଯ୍ୟ କରିବାର ବିଚାର ତ ତିଳେ ମାତ୍ର ବି ଆସେ ନାହିଁ। ଆଉ ସେଥିରେ ମଧ୍ୟ ଯଦି ଦାନ କରେ ତେବେ ମଧ୍ୟ ନାଁ କମାଇବା ପାଇଁ, କିପରି ମୋ ନାଁ ହୋଇଯାଉ। କାହାରି ହୃଦୟକୁ ଶାନ୍ତି ପହଞ୍ଚାଏ ନାହିଁ। ଏଠି ଜ୍ଞାନୀପୁରୁଷଙ୍କ ଉପସ୍ଥିତିରେ ହୃଦୟକୁ ଶାନ୍ତି ପହଞ୍ଚେ। ସାରା ରାତି ହୃଦୟକୁ ଶାନ୍ତି ଲାଗୁଥାଏ ଏବଂ ହୃଦୟକୁ ଶାନ୍ତି ହେଉ, ତାହା ତ ଜଣେ ଜଣେ ବ୍ୟକ୍ତିକୁ ପାଞ୍ଚ-ପାଞ୍ଚ ଲକ୍ଷ ଟଙ୍କା ଦେବା ସହ ସମାନ ଅଟେ। ତଥାପି ହୃଦୟ ରହିବ ନାହିଁ ସର୍ବଦା, ଟଙ୍କା ଦେବାଦ୍ୱାରା ଓଲଟା *ଉପାଧି* ହୁଏ।

ଅର୍ଥାତ ଏହା ପାପାନୁବନ୍ଧୀ ପୁଣ୍ୟ ଅଟେ, ସେମାନଙ୍କଦ୍ୱାରା ଏଠାକୁ ଆସିହେବ ହିଁ ନାହିଁ। ସେଥିପାଇଁ ଏଠାକୁ ଏପରି ଲକ୍ଷ୍ମୀପତି ଆସି ପାରନ୍ତି ନାହିଁ। ଏଠି ତ ପୁଣ୍ୟାନୁବନ୍ଧୀ ପୁଣ୍ୟ, ଶୁଦ୍ଧ ଲକ୍ଷ୍ମୀ ଥିବ, ସେମାନେ ହିଁ ଏକାଠି ହୁଅନ୍ତି। ଶୁଦ୍ଧ ଅର୍ଥାତ ଅଲଗା କିଛି ନୁହେଁ, ଏହି କାଳ ହିସାବରେ ସମ୍ପୂର୍ଣ୍ଣ ଶୁଦ୍ଧ ତ ନଥାଏ। ଆମ ଘରେ ମଧ୍ୟ ସମ୍ପୂର୍ଣ୍ଣ ଶୁଦ୍ଧ ନାହିଁ। କିନ୍ତୁ ଏହି କାଳ ହିସାବରେ ଯଦି ଏପରି ଭଲ ବିଚାର ହୁଏ ଯେ ୟାକୁ କିପରି ସୁଖ ମିଳୁ, କିପରି ତା'କୁ ଜ୍ଞାନ ପ୍ରାପ୍ତ ହୋଇଯାଉ, ଧର୍ମର ବିଚାର ଆସେ, ତେବେ ତାହା ଭଲ ଲକ୍ଷ୍ମୀ କୁହାଯାଏ। ପୁଣ୍ୟାନୁବନ୍ଧୀ ପୁଣ୍ୟର ଲକ୍ଷ୍ମୀ କୁହାଯାଏ। ସେହି ପୁଣ୍ୟାନୁବନ୍ଧୀ ପୁଣ୍ୟ ଅର୍ଥାତ ପୁଣ୍ୟ ଅଛି ଏବଂ ପୁଣି ନୂଆ ପୁଣ୍ୟ ବାନ୍ଧୁଛି। ବିଚାର ସବୁ ଉତ୍ତମ ହୋଇଥାଏ ଆଉ ଅନ୍ୟ ଜଣଙ୍କର ପୁଣ୍ୟ ଥାଏ କିନ୍ତୁ ବିଚାର ଖରାପ ଆସେ, ଅର୍ଥାତ କ'ଣ ଭୋଗିନେବି, କେଉଁଠୁ ନେଇ ଆସିବି, ସାରା ଦିନ, ରାତିରେ ବି ଶୋଇ-ଶୋଇ ମେସିନ୍ ଚାଲୁ ହିଁ ରହିଥାଏ, ସାରା ରାତି।

ଆଉ ପୁଣି ସେମାନଙ୍କ ଘରେ ଦର୍ଶନ କରିବା ପାଇଁ ମୋତେ ଆମନ୍ତ୍ରଣ କରନ୍ତି, ସେଠି ମୁମ୍ବାଇରେ। କାହିଁକିନା ଲୋକେ ଜାଣନ୍ତି ସେଥିପାଇଁ ଦର୍ଶନ ପାଇଁ ଘରକୁ ନେଇଯାନ୍ତି। ସେଠାକୁ ଯାଏ, ତେବେ ଏମିତିରେ ତ କୋଟି-କୋଟି ଟଙ୍କାର ମାଲିକ ହୋଇଥାଏ, କିନ୍ତୁ ଯେପରି ଶବକୁ ବସାଇ ଦିଆଯାଇଛି, ସେହିପରି ଦେଖାଯାଉଥାଏ। ସେ ଜୟ-ଜୟ କରେ ନା! ମୁଁ ବୁଝିଯାଏ ଯେ ଏ ବିଚରା ଶବ ଅଟେ। ପୁଣି ସେଠାରେ ଦେଖେ ଯେ କିଏ-କିଏ ଭଲ ? ସେଠି ତାଙ୍କ ଚାକର ଥାଆନ୍ତି, ଆରେ! ଶରୀର

ଶକ୍ତିଶାଳୀ, ଲାଲ, ଲାଲ.... ପୁଣି ସେ ରୋଷେଇଆ ଥାଆନ୍ତି, ସେମାନେ ତ ଲାଉତୁମ୍ବା ପରି, ହାଫୁସ୍ ଆମ୍ବ ହିଁ ଦେଖିନିଅ ନା ! ସେତେବେଳେ ମୁଁ ବୁଝିଯାଏ ଯେ ଏ ସେଠ୍‌ମାନେ ଅଧୋଗତିରେ ଯିବେ, ଆଜି ତାହାର ଏହା ଚିହ୍ନ ଦେଖାଯାଉଛି ।

ବତିଶି ଭୋଜନବାଲା ଥାଳି ଥିବ, କିନ୍ତୁ ସେ ତ ଖାଇ ପାରେ ନାହିଁ । ଆମେ ସବୁ ସାଥିରେ ଖାଇବାକୁ ବସୁ, କିନ୍ତୁ ସେଠ୍‌କୁ ମୁଁ ଯେବେ କହେ, କାହିଁକି ତୁମେ ଖାଉ ନାହଁ ? ତେବେ କହେ, ମୋତେ ଡାଇବେଟିସ୍ ଅଛି ଏବଂ ବ୍ଲଡ଼ପ୍ରେସର୍ ଅଛି ।

ଏବେ ସେଠ୍‌କୁ ଡକ୍ଟର କହିଥାଏ ଯେ 'ଦେଖ, ବ୍ଲଡ଼ପ୍ରେସର୍ ଅଛି ତୁମକୁ, ଡାଇବେଟିସ୍ ଅଛି, କିଛି ଯାଡୁସ୍ୟାଡୁ ଖାଇବ ନାହିଁ । ବାଜରାର ରୁଟି ଏବଂ ଅଳ୍ପ ଦହି ଖାଇବ ହେଲା..., ଆଉ କିଛି ବେଶୀ ଖାଇବ ନାହିଁ ।' ଆରେ ଭାଇ, ଆମର ସେଠି ବଳଦକୁ ବିଲକୁ ନିଅନ୍ତି, ସେ ବଳଦ କାହିଁକି ଖାଏ ନାହିଁ ? ବିଲରେ ଥିବା ସତ୍ତ୍ୱେ ମଧ୍ୟ ? କାରଣ ତୁଣ୍ଡି ବନ୍ଧା ହୋଇଛି । ଏଠି ମୁହଁରେ କିଛି ବାନ୍ଧନ୍ତି ନା ? କ'ଣ କହନ୍ତି ତାହାକୁ ?

**ପ୍ରଶ୍ନକର୍ତ୍ତା :** ଜାଲି ।

**ଦାଦାଶ୍ରୀ :** ଆମର ସେଠି 'ତୁଣ୍ଡି' କହନ୍ତି ତାହାକୁ । ତାହା ବନ୍ଧା ହୋଇଥାଏ ନା, ବିଚରାଙ୍କୁ ଖାଇବାର ଥିଲେ ମଧ୍ୟ ଖାଇପାରନ୍ତି ନାହିଁ । ଡକ୍ଟର କହିଥାଏ ମରିଯିବ ସେଥିପାଇଁ... ସେହିପରି ଏମାନଙ୍କର ତୁଣ୍ଡି ବନ୍ଧା ହୋଇଥାଏ ।

ଅର୍ଥାତ୍ ନିରୋଳା ନର୍କର ବେଦନା ଭୋଗୁଛନ୍ତି । ମୁଁ ସବୁ ସେଠ୍‌ମାନଙ୍କ ଘରକୁ ଯାଇଛି । ପୁଣି ଏଠାରେ ଦର୍ଶନ କରାଏ, ତେବେ କିଛି ଶାନ୍ତି ହୁଏ । ମୁଁ କହେ ଦାଦା ଭଗବାନଙ୍କ ନାମ ନେଉଥିବ । କାହିଁକିନା ଜ୍ଞାନ ତ ତାଙ୍କ ହିସାବରେ ଆସେ ହିଁ ନାହିଁ । ତାଙ୍କ ପାଇଁ ଯଦି ବ୍ୟବସ୍ଥା କରିବା ତେବେ ମଧ୍ୟ ଆସି ପାରେ ହିଁ ନାହିଁ । ଅର୍ଥାତ ତାହା ତ ମହାଦୁଃଖ ଅଟେ ।

## ପୁଣ୍ୟଶାଳୀ ହିଁ ଭୋଗିବା ଜାଣେ

ଲକ୍ଷ୍ମୀ ମଣିଷକୁ ମଜୁରିଆ କରିଦିଏ । ଯଦି ଲକ୍ଷ୍ମୀ ଆବଶ୍ୟକତା ଠାରୁ ଅଧିକ ଆସିଯାଏ, ତେବେ ପୁଣି ମଣିଷ ମଜୁରିଆ ପରି ହୋଇଯାଏ । ତା' ପାଖରେ ଲକ୍ଷ୍ମୀ ବହୁତ ଅଛି କିନ୍ତୁ ସାଥେ-ସାଥେ ସେ ଦାନେଶ୍ୱର ଅଟେ, ଅର୍ଥାତ ଭଲ । ନହେଲେ

ମଜୁରିଆ ହିଁ କୁହାଯିବ ନା! ଏବଂ ଦିନସାରା କେବଳ ମଜୁରି କରିବାରେ ଲାଗିଥାଏ, ତା'କୁ ସ୍ତ୍ରୀର ମଧ୍ୟ ପଡ଼ି ନଥାଏ, ପିଲାଙ୍କର ପଡ଼ି ନଥାଏ, କାହାର ବି ପଡ଼ି ନଥାଏ, କେବଳ ଲକ୍ଷ୍ମୀର ହିଁ ପଡ଼ିଥାଏ। ଅର୍ଥାତ ଲକ୍ଷ୍ମୀ ମଣିଷକୁ ଧୀରେ ଧୀରେ ମଜୁରିଆ କରିଦିଏ ଏବଂ ପୁଣି ତା'କୁ ତିର୍ଯ୍ୟଞ୍ଚ ଗତିରେ ନେଇଯାଏ। କାରଣ ପାପାନୁବନ୍ଧୀ ପୁଣ୍ୟ ଅଟେ ନା! ଯଦି ପୁଣ୍ୟାନୁବନ୍ଧୀ ପୁଣ୍ୟ ହୋଇଥିବ ତେବେ ତ ଅସୁବିଧା ନାହିଁ। ପୁଣ୍ୟାନୁବନ୍ଧୀ ପୁଣ୍ୟ କାହାକୁ କହନ୍ତି ଯେ ପୁରା ଦିନରେ କେବଳ ଅଧାଘଣ୍ଟା ପରିଶ୍ରମ କରିବାକୁ ପଡ଼େ। ସେ ଯଦି ଅଧାଘଣ୍ଟା ପରିଶ୍ରମ କରେ ତେବେ ମଧ୍ୟ ସବୁ କାମ ସରଳତାର ସହ ଧୀରେ-ଧୀରେ ଚାଲିଥାଏ।

ଏହି ଜଗତ ତ ଏହିପରି ଅଟେ। ସେଥିରେ ଭୋଗିବା ବାଲା ବି ଥାଆନ୍ତି ଏବଂ ପରିଶ୍ରମ କରିବାବାଲା ବି ଥାଆନ୍ତି, ସବୁ ମିଶାମିଶି ଥାଆନ୍ତି। ପରିଶ୍ରମ କରିବାବାଲା ଏପରି ବୁଝନ୍ତି ଯେ 'ଏହା ମୁଁ କରୁଛି।' ତାଙ୍କୁ ତାହାର ଅହଙ୍କାର ଥାଏ। ଯେବେକି ଭୋଗିବା ବାଲାଙ୍କ ଠାରେ ଅହଙ୍କାର ନଥାଏ, ସେତେବେଳେ ତାଙ୍କୁ ଭୋକ୍ତାପଣର ରସ ମିଳେ। ସେ ପରିଶ୍ରମ କରିବାବାଲାଙ୍କୁ ଅହଙ୍କାରର ଗର୍ବରସ ମିଳେ।

ଜଣେ ସେଠ୍ ମୋତେ କହିଲେ, 'ମୋ ପୁଅକୁ କିଛି କୁହନ୍ତୁ, ପରିଶ୍ରମ କରିବାର ନାହିଁ। ଆରାମରେ ଭୋଗୁଛି।' ମୁଁ କହିଲି, 'କିଛି କହିବା ପରି ହିଁ ନାହିଁ। ସେ ତା' ନିଜ ଭାଗର ପୁଣ୍ୟ ହିଁ ଭୋଗୁଅଛି, ସେଥିରେ ମୁଁ କ'ଣ ପାଇଁ ଦଖଲ କରିବି?' ତେବେ ସେ ମୋତେ କହେ ଯେ, 'ତାଙ୍କୁ ସିଆଣିଆ କରିବାର ନାହିଁ କି?' ମୁଁ କହିଲି, ଜଗତରେ ଯିଏ ଭୋଗେ, ତା'କୁ ସିଆଣିଆ କୁହାଯାଏ। ବାହାରେ ପକାଇ ଦିଏ ତା'କୁ ପାଗଳ କୁହାଯାଏ ଏବଂ ପରିଶ୍ରମ କରୁଥାଏ ତା'କୁ ମଜୁରିଆ କୁହାଯାଏ। କିନ୍ତୁ ପରିଶ୍ରମ କରେ ତା'କୁ ଅହଙ୍କାରର ରସ ମିଳେ ନା! ଲମ୍ୱା କୋଟ ପିନ୍ଧି ଯାଏ ସେଥିପାଇଁ ଲୋକେ 'ସେଠଜୀ ଆସିଲେ, ସେଠଜୀ ଆସିଲେ' କହନ୍ତି, କେବଳ ଏତିକି ବାସ୍ ଆଉ ଭୋଗିବା ବାଲାକୁ ଏପରି କୌଣସି ସେଠ୍-ବେଠ୍ ର ପଡ଼ି ନଥାଏ। 'ମୁଁ ତ ମୋର ଭୋଗିଲି ସେତିକି ସତ' କହେ।

ଏବେ ଯାହା ଅଛି, ତାହାକୁ ଲକ୍ଷ୍ମୀ କୁହାଯିବ ହିଁ ନାହିଁ। ଏହା ତ ପାପାନୁବନ୍ଧୀ ପୁଣ୍ୟବାଲା ଲକ୍ଷ୍ମୀ ଅଟେ। ପୁଣ୍ୟ ଏପରି ବାନ୍ଧିଥିଲେ ଅଥବା ଅଜ୍ଞାନ ତପ କରିଥିଲେ, ତାହାର ପୁଣ୍ୟ ବନ୍ଧା ହୋଇଛି। ତାହାର ଫଳ ଆସିଛି, ସେଥିରେ ଲକ୍ଷ୍ମୀ ଆସିଲା। ଏହି ଲକ୍ଷ୍ମୀ ବ୍ୟକ୍ତିକୁ ପାଗଳ-ବାତୁଳ କରିଦିଏ। ଏହାକୁ ସୁଖ କିପରି କୁହାଯିବ? ସୁଖ ତ,

ପଇସାର ବିଚାର ହିଁ ନ ଆସେ, ତାହାକୁ ସୁଖ କୁହାଯିବ । ମୋତେ ତ ବର୍ଷକୁ ଥରେ ଅଧେ ବିଚାର ଆସେ ଯେ ପକେଟରେ ପଇସା ଅଛି ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ବୋଝ ପରି ଲାଗେ ?

**ଦାଦାଶ୍ରୀ :** ନା, ବୋଝ ତ ମୋତେ ହୁଏ ହିଁ ନାହିଁ । କିନ୍ତୁ ମୋତେ ସେହି ବିଚାର ହିଁ ଆସେ ନାହିଁ ନା ! କ'ଣ ପାଇଁ ବିଚାର କରିବି ? ସବୁ ଆଗ-ପଛ ପ୍ରସ୍ତୁତ ହିଁ ଥାଏ । ଯେପରି ଖାଇବା-ପିଇବା ସବୁ ତୁମ ଟେବଲ୍‌କୁ ଆସୁଛି ନା ନାହିଁ ?

## *ଭୋଗବଟା*, ଟଙ୍କାର ନା ବେଦନୀୟର ?

ଏହା ତ ଯାହାକୁ ପଥର ବାଜିଲା ତା'ର ହିଁ ଭୁଲ । ଯିଏ ଭୋଗେ ତା'ର ଭୁଲ କେବଳ ସେତିକି ନୁହେଁ କିନ୍ତୁ ଭୋଗିବାର ପୁରସ୍କାର ମଧ୍ୟ ଅଛି । ପାପର ପୁରସ୍କାର ମିଳେ ତେବେ ତାହା ତା'ର ଖରାପ କର୍ତ୍ତବ୍ୟର ଦଣ୍ଡ ଏବଂ ଫୁଲ ଚଢ଼େ ତେବେ ତାହା ତା'ର ଭଲ କର୍ତ୍ତବ୍ୟର ପୁଣ୍ୟର ପୁରସ୍କାର, ତଥାପି ଉଭୟ *ଭୋଗବଟା* (ସୁଖ-ଦୁଃଖର ପ୍ରଭାବ) ହିଁ ଅଟେ, *ଅଶାତା* (ଦୁଃଖ)ର ଅଥବା *ଶାତା* (ସୁଖ)ର ।

ପ୍ରକୃତି କ'ଣ କହେ ? ସେ କେତେ ଟଙ୍କା ଖର୍ଚ୍ଚ କଲା, ତାହା ଆମର ଏଠି ଦେଖାଯାଏ ନାହିଁ । ତାହା ତ ବେଦନୀୟ କ'ଣ ଭୋଗିଲା ? *ଶାତା* ନା *ଅଶାତା*, କେବଳ ସେତିକି ଆମର ଏଠି ଦେଖାଯାଏ । ଟଙ୍କା ନଥିବ ତେବେ ମଧ୍ୟ *ଶାତା* ଭୋଗିବ ଏବଂ ଟଙ୍କା ଥିବ ତେବେ ମଧ୍ୟ *ଅଶାତା* ଭୋଗିବ । ଅର୍ଥାତ *ଶାତା* ଅଥବା *ଅଶାତା* ବେଦନୀୟ ଭୋଗୁଛି, ତାହା ଟଙ୍କା ଉପରେ ଆଧାରିତ ରହେ ନାହିଁ ।

## ପ୍ରକୃତ ଧନ ସୁଖ ଦିଏ

ଦଶ ଲକ୍ଷ ଟଙ୍କା ବାପ ପୁଅକୁ ଦେଇଥିବ ଏବଂ ବାପ କହିବ ଯେ 'ଏବେ ମୁଁ ଆଧ୍ୟାତ୍ମିକ ଜୀବନ ବ୍ୟତୀତ କରିବି ।' ତେବେ ସେ ପୁଅ ସର୍ବଦା ମଦରେ, ମାଂସାହାରରେ, ସେୟାରବଜାରରେ, ସବୁଥିରେ ସେହି ପଇସା ହରାଇ ଦିଏ । କାହିଁକିନା ଯେଉଁ ପଇସା ଅସତ୍ ରାସ୍ତାରେ ଠୁଳ ହୋଇଥାଏ, ତାହା ନିଜ ପାଖରେ ରହେ ନାହିଁ । ଆଜି ତ ପ୍ରକୃତ ଧନ ମଧ୍ୟ - ପ୍ରକୃତ ପରିଶ୍ରମର ଧନ ମଧ୍ୟ ରହୁ ନାହିଁ, ତେବେ ଅସତ୍ ଧନ କିପରି ରହିବ ? ସେଥିପାଇଁ ପୁଣ୍ୟର ଧନ ଦରକାର, ଯେଉଁଥିରେ ଅପ୍ରମାଣିକତା ନଥିବ । ଭଲ ଉଦ୍ଦେଶ୍ୟରେ ଉପାର୍ଜିତ ହୋଇଥିବା ଧନ ଯଦି ଥିବ, ତାହା ସୁଖ ଦେବ । ନହେଲେ

ଏବେ ଦୂଷମକାଳର ଧନ ମଧ୍ୟ ପୁଣ୍ୟର ହିଁ କୁହାଯାଏ, କିନ୍ତୁ ପାପାନୁବନ୍ଧୀ ପୁଣ୍ୟର ଅଟେ, ତାହା ନିରୋଳା ପାପ ହିଁ ବନ୍ଧାଏ । ଏହା ଅପେକ୍ଷା ସେ ଲକ୍ଷ୍ମୀଜୀଙ୍କୁ କହିବା, 'ଆପଣ ଆସନ୍ତୁ ହିଁ ନାହିଁ, ଏତିକି ଦୂରରେ ହିଁ ରୁହନ୍ତୁ । ସେଥିରେ ଆମର ଶୋଭା ଭଲ ଅଛି ଏବଂ ଆପଣଙ୍କର ମଧ୍ୟ ଶୋଭା ବଢ଼ିବ ।' ଏହି ବଙ୍ଗଳା ତିଆରି ହେଉଛି, ତାହା ସବୁ ପାପାନୁବନ୍ଧୀ ପୁଣ୍ୟ ଖୋଲାଖୋଲି ଦେଖାଯାଉଛି । ସେଥିରେ ଏଠି କେହି ଏପରି ଥିବ, ହଜାରରେ ଜଣେଅଧେ ବ୍ୟକ୍ତି ଯେ ଯାହାର ପୁଣ୍ୟାନୁବନ୍ଧୀ ପୁଣ୍ୟ ହୋଇଥିବ । ନହେଲେ, ଏସବୁ ପାପାନୁବନ୍ଧୀ ପୁଣ୍ୟ ଅଟେ । ଏତେ ଲକ୍ଷ୍ମୀ ହେଉଥିବ କେବେ ? ନିରୋଳା ପାପ ହିଁ ବାନ୍ଧୁଛନ୍ତି, ଏମାନେ ତ ତିର୍ଯ୍ୟଞ୍ଚର ରିଟର୍ଣ୍ଣ ଟିକଟ ନେଇ ଆସିଛନ୍ତି ।

ଏକ ମିନିଟ ମଧ୍ୟ ରହିହୁଏ ନାହିଁ ଏପରି ଏହି ସଂସାର, ଜବରଦସ୍ତ ପୁଣ୍ୟ ଥାଏ ତଥାପି ଭିତରେ ଅନ୍ତରଦାହ କମ ହୁଏ ନାହିଁ, ଅନ୍ତରଦାହ ନିରନ୍ତର ଜଳି ଚାଲିଥାଏ । ଅନ୍ତରଦାହ କାହିଁକି ହୁଏ ? ତାହା ପାପ-ପୁଣ୍ୟର ଅଧୀନ ନୁହେଁ । ଅନ୍ତରଦାହ 'ରଙ୍ଗ୍-ବିଲିଫ୍'ର ଅଧିନ ଅଟେ । ଚାରି ପାର୍ଶ୍ୱରୁ ସବୁ ଫାଷ୍ଟ କ୍ଲାସ ସଂଯୋଗ ଥିବ, ତଥାପି ଅନ୍ତରଦାହ ହୋଇଚାଲିଥାଏ । ତାହା ଏବେ କିପରି ଯିବ ? ପୁଣ୍ୟ ବି ଶେଷରେ ସମାପ୍ତ ହୋଇଯିବ । ଦୁନିଆର ଏହା ନିୟମ ଅଟେ ଯେ ପୁଣ୍ୟ ସମାପ୍ତ ହୋଇଯାଏ । ତେବେ ପୁଣି କ'ଣ ହେବ ? ପାପର ଉଦୟ ହେବ । ଏହା ତ ଅନ୍ତରଦାହ ଅଛି ଆଉ ପାପର ଉଦୟ ସମୟରେ ବାହାରର ଦାହ ଆରମ୍ଭ ହେବ । ସେତେବେଳେ ତୋର କି ଦଶା ହେବ ? ଏଣୁ ଭଗବାନ କୁହନ୍ତି ଯେ ସଚେତ ହୋଇଯାଅ ।

## ପୁଣ୍ୟରୁ ହିଁ ପ୍ରାପ୍ତ ଲକ୍ଷ୍ମୀ

**ପ୍ରଶ୍ନକର୍ତ୍ତା :** ଏବେ ତ ପାପୀଙ୍କ ପାଖରେ ହିଁ ପଇସା ଅଛି ।

**ଦାଦାଶ୍ରୀ :** ପାପୀଙ୍କ ପାଖରେ ନାହିଁ । ମୁଁ ତୁମକୁ ଠିକ୍ ରୂପେ ବୁଝାଉଛି । ତୁମେ ମୋ କଥା ଥରେ ବୁଝ ଯେ ପୁଣ୍ୟ ବିନା ତ ପଇସା ତୁମକୁ ଛୁଇଁବ ମଧ୍ୟ ନାହିଁ । କଳା ବଜାରର ପଇସା ବି ଛୁଇଁବ ନାହିଁ ଏବଂ ଧଳା ବଜାରର ବି ଛୁଇଁବ ନାହିଁ । ପୁଣ୍ୟ ବିନା ତ ଚୋରିର ପଇସା ବି ଆମକୁ ଛୁଇଁବ ନାହିଁ । କିନ୍ତୁ ତାହା ପାପାନୁବନ୍ଧୀ ପୁଣ୍ୟ ଅଟେ । ତୁମେ ଯାହା କହୁଛ ସେହି ପାପ, ତାହା ଶେଷରେ ପାପରେ ହିଁ ନେଇଯାଏ । ସେହି ପୁଣ୍ୟ ହିଁ ଅଧୋଗତିରେ ନେଇଯାଏ ।

ଯଦି ଖରାପ ପଇସା ଆସେ, ତେବେ ଖରାପ ବିଚାର ଆସେ ଯେ କାହାର

ଭୋଗିନେବି, ପୁରାଦିନ ଅପମିଶ୍ରଣ କରିବାର ବିଚାର ଆସେ, ସେ ଅଧୋଗତିରେ ଯାଏ । ପୁଣ୍ୟ ଭୋଗେ ନାହିଁ ଏବଂ ଅଧୋଗତିରେ ଯାଏ । ଏହା ଅପେକ୍ଷା ପୁଣ୍ୟାନୁବନ୍ଧୀ ପାପ ଭଲ ଯେ ଆଜି ଟିକିଏ ପରିବା ଆଣିବାରେ ଅସୁବିଧା ପଡୁଛି, କିନ୍ତୁ ପୁରା ଦିନ ଭଗବାନଙ୍କ ନାମ ତ ନିଆଯାଉଛି ଆଉ ପୁଣ୍ୟାନୁବନ୍ଧୀ ପୁଣ୍ୟ ଯଦି ଥିବ, ତେବେ ସେ ପୁଣ୍ୟ ଭୋଗେ ଏବଂ ନୂଆ ପୁଣ୍ୟ ଉତ୍ପନ୍ନ ହୁଏ ।

## ...ତେବେ ତ ପରଜନ୍ମର ବି ବିଗିଡ଼ିବ

**ପ୍ରଶ୍ନକର୍ତ୍ତା :** ଆଜିର ଟାଇମ ଏପରି ଅଟେ ଯେ ମନୁଷ୍ୟ ନିଜର ଭରଣ-ପୋଷଣ ପୂରା କରିପାରେ ନାହିଁ । ତାହା ପୂରା କରିବା ପାଇଁ ତା'କୁ ଠିକ-ଭୁଲ କରିବାକୁ ପଡ଼େ, ତେବେ ତାହା କରାଯାଇ ପାରିବ ?

**ଦାଦାଶ୍ରୀ :** ତାହା ତ ଏପରି ଅଟେ, ଯେ ଉଧାର କରି ଘିଅ ପିଇବା । ସେହିପରି ଅଟେ ଏହି ବ୍ୟାପାର । ଏହା ଭୁଲ କରିଥିବା ଯୋଗୁଁ ତ ଏବେ ଅଭାବ ପଡୁଛି, ଏବେ ଅଭାବ ପଡୁଛି ତାହାର କାରଣ କ'ଣ ? ତାହା ପାପ ଅଟେ ସେଥିପାଇଁ ଆଜି ଅଭାବ ପଡୁଛି । ପରିବା ନାହିଁ, ଅନ୍ୟ କିଛି ନାହିଁ । ତଥାପି ଏବେ ଯଦି ଭଲ ବିଚାର ଆସୁଥିବ, ଧର୍ମର - ମନ୍ଦିର ଯିବାର, ଉପାଶ୍ରୟ ଯିବାର, କିଛି ସେବା କରିବାର, ଏପରି ବିଚାର ଆସୁଥିବ ତେବେ ଆଜି ପାପ ଅଛି, ତଥାପି ସେ ପୁଣ୍ୟ ବାନ୍ଧୁଛି । କିନ୍ତୁ ପାପ ଥିବ ଏବଂ ପୁଣି ପାପ ବାନ୍ଧିବା, ଏପରି ନହେବା ଉଚିତ । ପାପ ଥିବ, ଅଭାବ ପଡୁଥିବ ଏବଂ ସେପରି ଓଲଟା କରିବା ତେବେ ପୁଣି ଆମ ପାଖରେ ରହିଲା କ'ଣ ?

## ତାହା ବୁଦ୍ଧିର ନା ପରିଶ୍ରମର ଉପାର୍ଜନ ?

କଥା ତ ବୁଝିବାକୁ ପଡ଼ିବ ନା ? ଏପରି କେବେ ପର୍ଯ୍ୟନ୍ତ *ପୋଲ୍* ଚାଲିବ ? ଏବଂ *ଉପାଧି* ତ ପସନ୍ଦ ନୁହେଁ । ଏହି ମନୁଷ୍ୟ ଦେହ *ଉପାଧି* ରୁ ମୁକ୍ତ ହେବା ପାଇଁ ଅଟେ । କେବଳ ପଇସା କମାଇବା ପାଇଁ ନୁହେଁ । ପଇସା କାହାଦ୍ୱାରା କମାଉ ଥିବେ ? ପରିଶ୍ରମ ଦ୍ୱାରା କମାଉଥିବେ ନା ବୁଦ୍ଧି ଦ୍ୱାରା ?

**ପ୍ରଶ୍ନକର୍ତ୍ତା :** ଉଭୟ ଦ୍ୱାରା ।

**ଦାଦାଶ୍ରୀ :** ଯଦି ପଇସା ପରିଶ୍ରମ ଦ୍ୱାରା କମାଇ ହେଉଥାନ୍ତା ତେବେ ଏହି ମଜୁରିଆମାନଙ୍କ ପାଖରେ ବହୁତ ସାରା ପଇସା ଥାଆନ୍ତା । କାରଣ ଏହି ମଜୁରିଆମାନେ

ଅଧିକ ପରିଶ୍ରମ କରୁଛନ୍ତି ନା! ଆଉ ଯଦି ପଇସା ବୁଦ୍ଧି ଦ୍ୱାରା ହିଁ କମାଇ ହେଉଥାନ୍ତା ତେବେ ଏ ସବୁ ପଣ୍ଡିତମାନେ ଅଛନ୍ତି ନା! କିନ୍ତୁ ତାଙ୍କର ତ ଚପଲ ମଧ୍ୟ ଅଧା ଘଷି ହୋଇ ଯାଇଥାଏ । ପଇସା କମାଇବା ବୁଦ୍ଧିର ଖେଳ ନୁହେଁ କିମ୍ବା ପରିଶ୍ରମର ଫଳ ନୁହେଁ । ତାହା ତ ତୁମେ ପୂର୍ବେ ପୁଣ୍ୟ କରିଛ, ତାହାର ଫଳସ୍ୱରୂପ ତୁମକୁ ମିଳୁଛି । ଆଉ କ୍ଷତି, ତାହା ପାପ କରିଛ, ତାହାର ଫଳସ୍ୱରୂପ ଅଟେ । ପୁଣ୍ୟ ଏବଂ ପାପର ଅଧୀନ ଅଟେ ଲକ୍ଷ୍ମୀ । ସେଥିପାଇଁ ଯଦି ଲକ୍ଷ୍ମୀ ଦରକାର ଥିବ ତେବେ ଆମକୁ ପୁଣ୍ୟ-ପାପର ଧ୍ୟାନ ରଖିବା ଉଚିତ ।

ଭୁଲେଶ୍ୱର(ମୁମ୍ବାଇର ଏକ ଅଞ୍ଚଳ)ରେ ଅଧା ଚପଲ ଘଷି ହୋଇ ଯାଇଥିବ, ଏପରି ବହୁତ ବୁଦ୍ଧିମାନ ଲୋକ ଅଛନ୍ତି । କେହି ମାସକୁ ପାଞ୍ଚଶହ କମାଏ, କେହି ସାତ ଶହ କମାଏ, କେହି ଏଗାର ଶହ କମାଏ । ଏରିଆ କମ୍ପେଇ ଦିଏ ଯେ ଏଗାର ଶହ କମାଉଛି । ଆରେ, କିନ୍ତୁ ତୋ ଚପଲ ତ ଅଧାକୁ ଅଧା ହିଁ ଅଛି । ଦେଖ ବୁଦ୍ଧିର କାରଖାନା! ଆଉ କମ ବୁଦ୍ଧିବାଲା ବହୁତ କମାନ୍ତି । ବୁଦ୍ଧିବାଲା ପଶା ପକାଇଲେ ସିଧା ପଡ଼େ ନା ମୁର୍ଖ ମଣିଷର ପଶା ସିଧା ପଡ଼େ ?

**ପ୍ରଶ୍ନକର୍ତ୍ତା :** ଯାହାର ପୁଣ୍ୟ ଥିବ, ତା'ର ସିଧା ପଡ଼େ ।

**ଦାଦାଶ୍ରୀ :** ବାସ୍ ସେଥିରେ ତ ବୁଦ୍ଧି ଚାଲେ ହିଁ ନାହିଁ ନା! ବୁଦ୍ଧିବାଲାର ତ ଓଲଟା ବିପରୀତ ହୁଏ । ବୁଦ୍ଧି ତ ତା'କୁ ଦୁଃଖରେ ହେଲ୍ପ କରେ । ଦୁଃଖରେ କିପରି ସବୁ ପୁଣି ଠିକ କରିନେବା, ସେପରି ତା'କୁ ହେଲ୍ପ କରେ ।

## ବୁଦ୍ଧି ମୁନିବର ଏବଂ ପୁଣ୍ୟ ସେଠ୍ ର

ଲକ୍ଷ୍ମୀଜୀ କାହାଦ୍ୱାରା ଆସନ୍ତି ଏବଂ କାହାଦ୍ୱାରା ଯାଆନ୍ତି, ତାହା ମୁଁ ଜାଣିଛି । ଲକ୍ଷ୍ମୀଜୀ ପରିଶ୍ରମଦ୍ୱାରା ଆସନ୍ତି ନାହିଁ ଅବା ବୁଦ୍ଧିଦ୍ୱାରା ବା କାମରେ ଟ୍ରିକ୍ ଆପଣେଇବା ଦ୍ୱାରା ଆସନ୍ତି ନାହିଁ । ଲକ୍ଷ୍ମୀ କିପରି କମାଯାଏ ? ଯଦି କେବଳ ଉଚିତ ରାସ୍ତାରେ କମାଇ ହେଉଥାନ୍ତା ତେବେ ଆମ ମନ୍ତ୍ରୀମାନଙ୍କୁ ଚାରିଅଣା ବି ମିଳନ୍ତା ନାହିଁ । ଏହି ଲକ୍ଷ୍ମୀ ତ ପୁଣ୍ୟରୁ କମାଯାଏ । ପାଗଳ ହୋଇଥିବ, ତେବେ ମଧ୍ୟ ପୁଣ୍ୟ ଦ୍ୱାରା କମାଇ ଚାଲେ ।

ଲକ୍ଷ୍ମୀ ତ ପୁଣ୍ୟରୁ ଆସେ । ବୁଦ୍ଧିର ଉପଯୋଗ କଲେ ମଧ୍ୟ ଆସେ ନାହିଁ । ଏହି ମିଲ୍ ମାଲିକ ଏବଂ ସେଠ୍ ମାନଙ୍କଠାରେ ବୁଦ୍ଧିର ଏକ ଛିଟା ମଧ୍ୟ ନଥାଏ, କିନ୍ତୁ ଢେର

ଲକ୍ଷ୍ମୀ ଆସେ ଆଉ ତାଙ୍କ ମୁନିବ ବୁଦ୍ଧି ଚଲାଉଥାଏ, ଇନକମ୍ ଟ୍ୟାକ୍ସ ଅଫିସ୍‌କୁ ଯାଏ ସେତେବେଳେ ସାହେବଙ୍କ ଗାଳି ମଧ୍ୟ ମୁନିବ ହିଁ ଖାଏ ଯେବେକି ସେଠ୍ ତ ଆରାମରେ ଶୋଇ ରହିଥାଏ ।

ଜଣେ ସେଠ୍ ଥିଲେ । ସେଠ୍ ଏବଂ ତାଙ୍କ ମୁନିବ ଦୁହେଁ ବସିଥିଲେ, ଅହମଦାବାଦରେ ହିଁ ତ ! କାଠର ଫଳକ ତା' ଉପରେ ଗଦି, ଏପରି ପଲଙ୍କ, ସାମ୍ନାରେ ଟିପୟ ! ଏବଂ ତା' ଉପରେ ଭୋଜନର ଥାଳି ଥିଲା । ସେଠ୍ ଭୋଜନ କରିବା ପାଇଁ ବସିଥିଲେ ! ସେଠ୍‌ଙ୍କ ଡିଜାଇନ୍ କହୁଛି । ଭୂମିରୁ ତିନି ଫୁଟ ଉପରେ ବସିଥିଲେ । ତାହା ଉପରକୁ ଦେଢ଼ ଫୁଟରେ ମୁଣ୍ଡ । ଚେହେରାର ତ୍ରିକୋଣ ଆକାର ଆଉ ବଡ଼ ବଡ଼ ଆଖି ଏବଂ ବଡ଼ ନାକ, ଓଠ ତ ମୋଟା ମୋଟା ପକୁଡ଼ି ପରି ଆଉ ପାଖରେ ଫୋନ୍ । ଖାଉ ଖାଉ ଫୋନ୍ ଆସୁଥିଲା ଏବଂ ସେ କଥା ହେଉଥିଲେ । ସେଠ୍‌ଙ୍କୁ ଖାଇବା ତ ଆସୁ ହିଁ ନଥିଲା । ପୁରିର ଦୁଇ-ତିନି ଖଣ୍ଡ ତଳେ ପଡ଼ିଯାଇଥିଲା ଏବଂ ଭାତ ତ କେତେ ସାରା ବିଞ୍ଚି ହୋଇ ପଡ଼ିଥିଲା ତଳେ । ଫୋନର ଘଣ୍ଟି ବାଜେ ଏବଂ ସେଠ୍ କହନ୍ତି ଯେ, 'ଦୁଇ ହଜାର ବିଡ଼ା ନେଇଯାଅ ।' ଏବଂ ପରଦିନ ଦୁଇଲକ୍ଷ ଟଙ୍କା କମାଇ ଦିଏ । ମୁନିବ ଭାଇ ବସି ବସି ମୁଣ୍ଡ ଖରାପ କରୁଥିଲେ ଏବଂ ସେଠ୍ ବିନା ପରିଶ୍ରମରେ କମାଉଥିଲେ । ଏମିତିରେ ସେଠ୍ ତ ବୁଦ୍ଧିଦ୍ୱାରା ହିଁ କମାଉଛି ପରି ଦେଖାଯାଏ । କିନ୍ତୁ ସେହି ବୁଦ୍ଧି ଉଚିତ ସମୟରେ ପୁଣ୍ୟ କାରଣରୁ ପ୍ରକାଶିତ ହୁଏ । ଏହା ପୁଣ୍ୟଦ୍ୱାରା ଅଟେ । ତାହା ତ ଯଦି ସେଠ୍‌ଙ୍କୁ ଏବଂ ମୁନିବଙ୍କୁ ଏକାସାଥିରେ ରଖିବ ତେବେ ବୁଝା ପଡ଼ିବ । ପ୍ରକୃତ ବୁଦ୍ଧି ତ ସେଠ୍‌ଙ୍କ ମୁନିବ ପାଖରେ ହିଁ ଥାଏ, ସେଠ୍‌ଙ୍କ ପାଖରେ ନୁହେଁ । ଏହି ପୁଣ୍ୟ କେଉଁଠୁ ଆସିଲା ? ଭଗବାନଙ୍କୁ ବୁଝିକି ଭଜିଲା, ତାହାଦ୍ୱାରା ? ନା, ନ ବୁଝି ଭଜିଲା, ତାହାଦ୍ୱାରା । କାହା ଉପରେ ଉପକାର କଲା, କାହାର ମଙ୍ଗଳ କଲା, ଏ ସବୁରୁ ପୁଣ୍ୟ ବାନ୍ଧି ହୋଇଗଲା ।

## ଶ୍ରୀମନ୍ତତା କାହାକୁ ମିଳେ ?

କ'ଣ କରିଥିଲେ ଶ୍ରୀମନ୍ତତା ମିଳେ ? ବହୁତ ଲୋକଙ୍କୁ ଯଦି ହେଲ୍ପ କରିଥିବ ତେବେ ଲକ୍ଷ୍ମୀ ନିଜ ପାଖକୁ ଆସେ ! ନହେଲେ ଲକ୍ଷ୍ମୀ ଆସେ ନାହିଁ । ଲକ୍ଷ୍ମୀ ତ ଦେବାର ଇଚ୍ଛାବାଲାଙ୍କ ପାଖକୁ ହିଁ ଆସେ । ଯିଏ ଅନ୍ୟମାନଙ୍କ ପାଇଁ କ୍ଷତି ସହେ, ଧୋକା ଖାଏ, ନୋବେଲିଟୀର ଉପଯୋଗ କରେ, ତା' ପାଖକୁ ଲକ୍ଷ୍ମୀ ଆସେ । ଚାଲିଗଲା ଏପରି ଲାଗେ ନିଶ୍ଚିତ କିନ୍ତୁ ଆସି ପୁଣି ସେଇଠି ହିଁ ଠିଆ ହୁଏ ।

**ପ୍ରଶ୍ନକର୍ତ୍ତା :** ଆପଣ ଲେଖିଛନ୍ତି ଯେ ଯିଏ କମାଏ, ସେ ବଡ଼ ମନବାଲା ହିଁ କମାଏ । ନେବା-ଦେବାରେ ଯିଏ ବଡ଼ ମନ ରଖେ ସେ ହିଁ କମାଏ । ବାକି ସଙ୍କୁଚିତ ମନବାଲା କେବେ କମାଏ ହିଁ ନାହିଁ !

**ଦାଦାଶ୍ରୀ :** ହଁ, ସବୁ ଦିଗରୁ ଯଦି ନୋବଲ୍ ହୋଇଥିବ, ତେବେ ଲକ୍ଷ୍ମୀ ସେଠାକୁ ଯାଏ । ଏହି ନିଚ୍ଚମନାଙ୍କ ପାଖକୁ ଲକ୍ଷ୍ମୀ ଯାଉଥିବ ?

**ପ୍ରଶ୍ନକର୍ତ୍ତା :** ଅର୍ଥାତ ପୁଣ୍ୟ କାରଣରୁ ମନୁଷ୍ୟ ଧନବାନ ହୁଏ ?

**ଦାଦାଶ୍ରୀ :** ଧନବାନ ହେବାପାଇଁ ତ ପୁଣ୍ୟ ଦରକାର । ପୁଣ୍ୟ ଯଦି ଥିବ ତେବେ ପଇସା ଆସେ ।

**ପ୍ରଶ୍ନକର୍ତ୍ତା :** ପଇସା ପାଇଁ ତ ଲେଖିଛନ୍ତି ନା ଯେ ବୁଦ୍ଧିର ଆବଶ୍ୟକତା ପଡ଼େ ।

**ଦାଦାଶ୍ରୀ :** ନା । ବୁଦ୍ଧି ତ କେବଳ ଲାଭ-କ୍ଷତି ହିଁ ଦେଖାଏ । ଯେଉଁଠିକି ଯାଅ ସେଠି ଲାଭ-କ୍ଷତି ଦେଖାଇ ଦିଏ । ସେ କିଛି ପଇସା-ଫଇସା ଦିଏ ନାହିଁ । ବୁଦ୍ଧି ଯଦି ପଇସା ଦେଉଥାନ୍ତା ତେବେ ଏହି ଭୁଲେଶ୍ୱରରେ ଏତେ ସାରା ବୁଦ୍ଧିଶାଳୀ ମୁନିବ ଥାଆନ୍ତି, ଯାହା ସେଠ୍ ବୁଝିପାରେ ନାହିଁ ସେସବୁ ସେମାନେ ବୁଝିଯାନ୍ତି । କିନ୍ତୁ ବିଚରାର ଚପଲ ପଛପଟୁ ଅଧା ଘସି ହୋଇଯାଇଥାଏ ଆଉ ସେଠ୍ ତ ସାଢ଼େ ତିନିଶହ ଟଙ୍କାର ବୁଟ୍ ପିନ୍ଧି ବୁଲନ୍ତି, ତଥାପି ମୁଣ୍ଡରେ କିଛି ନଥାଏ !

ପଇସା କମାଇବା ପାଇଁ ପୁଣ୍ୟର ଆବଶ୍ୟକତା ପଡ଼େ । ବୁଦ୍ଧିଦ୍ୱାରା ତ ଓଲଟା ପାପ ବାନ୍ଧି ହୁଏ । ବୁଦ୍ଧିଦ୍ୱାରା ଯଦି ପଇସା କମାଇବାକୁ ଯିବା ତେବେ ପାପର ବନ୍ଧନ ହୁଏ । ମୋର ବୁଦ୍ଧି ନାହିଁ, ସେଥିପାଇଁ ପାପ ବାନ୍ଧି ହେଉନାହିଁ । ମୋ ଠାରେ ଏକ ପରସେଣ୍ଟ୍ ମଧ୍ୟ ବୁଦ୍ଧି ନାହିଁ !

## ଲକ୍ଷ୍ମୀଜୀ କାହା ପଛରେ ?

ଲକ୍ଷ୍ମୀଜୀ ତ ପୁଣ୍ୟଶାଳୀମାନଙ୍କ ପଛରେ ହିଁ ବୁଲୁଥାନ୍ତି । ଆଉ ପରିଶ୍ରମୀ ଲୋକେ ଲକ୍ଷ୍ମୀଜୀଙ୍କ ପଛରେ ବୁଲୁଥାନ୍ତି । ଏଣୁ ଆମକୁ ଦେଖିନେବା ଉଚିତ ଯେ ଯଦି ପୁଣ୍ୟ ଥିବ ତେବେ ଲକ୍ଷ୍ମୀଜୀ ପଛରେ ଆସିବେ । ନହେଲେ ପରିଶ୍ରମରୁ ତ ରୁଟି ମିଳିବ, ଖାଇବା-ପିଇବା ମିଳିବ ଆଉ ଯଦି ଗୋଟେଅଧେ ଝିଅ ଥିବ ତେବେ ତା'ର ବିବାହ ହେବ । ବାକି, ପୁଣ୍ୟ ବିନା ଲକ୍ଷ୍ମୀ ମିଳେ ନାହିଁ । ସେଥିପାଇଁ ବାସ୍ତବିକ ସତ୍ୟ କ'ଣ କହେ ଯେ,

'ଯଦି ତୁ ପୁଣ୍ୟଶାଳୀ ତେବେ କ'ଣ ପାଇଁ ଛଟପଟ ହେଉଛୁ? ଆଉ ଯଦି ତୁ ପୁଣ୍ୟଶାଳୀ ନୁହେଁ ତେବେ ମଧ୍ୟ ଛଟପଟ କ'ଣ ପାଇଁ ହେଉଛୁ?'

ପୁଣ୍ୟଶାଳୀ ତ କିଭଳି ହୋଇଥାନ୍ତି? ଏ ଅଫିସରମାନେ ମଧ୍ୟ ଅଫିସରୁ ଆକୁଳ-ବ୍ୟାକୁଳ ହୋଇ ଘରକୁ ଫେରନ୍ତି, ସେତେବେଳେ ମେମ୍‌ସାହେବ କ'ଣ କହିବେ, 'ଦେଢ଼ ଘଣ୍ଟା ଲେଟ୍ ହେଲା, କୁଆଡ଼େ ଯାଇଥିଲ?' ଦେଖ ଏ ପୁଣ୍ୟଶାଳୀ! ପୁଣ୍ୟଶାଳୀକୁ ଏପରି ହେଉଥିବ? ପୁଣ୍ୟଶାଳୀକୁ ସାମାନ୍ୟ ଓଲଟା ପବନ ମଧ୍ୟ ଛୁଏଁ ନାହିଁ। ପିଲାଦିନରୁ ହିଁ ସେ କ୍ୱାଲିଟୀ ଅଲଗା ହୋଇଥାଏ। ଅପମାନର ଯୋଗ ମିଳେ ନାହିଁ। ଯେଉଁଠି ଯାଏ ସେଠି 'ଆସ, ଆସ ଭାଇ' ଏହିପରି ବଡ଼ ହୋଇଥାନ୍ତି। ଆଉ ଇଏ ତ ଯେଉଁଠି-ସେଠି ଧକ୍କା ଖାଉଥାଏ। ତାହାର ଅର୍ଥ କ'ଣ? ପୁଣି ଯେବେ ପୁଣ୍ୟ ସରିଯିବ ନା, ସେତେବେଳେ ଯେମିତି ଥିଲେ ପୁଣି ସେମିତି! ସେଥିପାଇଁ ଯଦି ତୁ ପୁଣ୍ୟଶାଳୀ ନୁହେଁ ତେବେ ସାରା ରାତି ପଟା ବାନ୍ଧି ବୁଲିଲେ (ଅଧିକ ପରିଶ୍ରମ କଲେ) କ'ଣ ସକାଳକୁ ପଚାଶ ଟଙ୍କା ମିଳିଯିବ? ଏଣୁ ଛଟପଟ ହୁଅ ନାହିଁ, ଏବଂ ଯାହା ମିଳିଲା ସେଥିରେ ଖାଇ-ପିଇ ଶୋଇଯାଅ ଚୁପଚାପ।

**ପ୍ରଶ୍ନକର୍ତ୍ତା :** ତାହା ତ ପ୍ରାରବ୍ଧବାଦ ହେଲା ନା?

**ଦାଦାଶ୍ରୀ :** ନା, ପ୍ରାରବ୍ଧବାଦ ନୁହେଁ। ତୁ ତୋ ଅନୁସାରେ କାମ କର। ପରିଶ୍ରମ କରି ରୁଟି ଖା। ହେଲେ, ଅନ୍ୟ ପ୍ରକାରେ ଛଟପଟ କାହିଁକି ହେଉଛୁ? ଏମିତି ଠୁଳେଇବି ଏବଂ ସେମିତି ଠୁଳେଇବି! ଯଦି ତୋତେ ଘରେ ମାନ ନାହିଁ, ବାହାରେ ମାନ ନାହିଁ ତେବେ କାହିଁକି ହାତ-ଗୋଡ଼ ମାରୁଛୁ? ଆଉ ଯେଉଁଠିକୁ ଯାଏ ସେଠି ତା'କୁ 'ଆସ, ବସ' କହିବାବାଲା ଥାଆନ୍ତି, ଏମିତି ବଡ଼-ବଡ଼ ପୁଣ୍ୟ ଯଦି ଆଣିଥାନ୍ତି, ତାଙ୍କର କଥା ହିଁ ଅଲଗା ନା?

ଏହି ସେଠ୍‌ମାନେ ସାରା ଜୀବନର ପଚିଶ ଲକ୍ଷ ନେଇ ଆସିଥାନ୍ତି, ସେମାନେ ପଚିଶ ଲକ୍ଷର ବାଇଶ ଲକ୍ଷ କରନ୍ତି କିନ୍ତୁ ବଢ଼ାନ୍ତି ନାହିଁ। ବଢ଼େ କେବେ? ଯଦି ସର୍ବଦା ଧର୍ମରେ ରହେ ତେବେ। କିନ୍ତୁ ଯଦି ନିଜେ ଭିତରେ ଦଖଲ କରିବାକୁ ଗଲା ତେବେ ବିଗିଡ଼ିଲା। ପ୍ରକୃତିରେ ହାତ ମାରିବାକୁ ଗଲା ମାନେ ବିଗିଡ଼ିଲା। ଲକ୍ଷ୍ମୀ ଆସେ କିନ୍ତୁ କିଛି ମିଳେ ନାହିଁ।

## ର୍ୟାଙ୍କ୍, ପୁଣ୍ୟଶାଳୀଙ୍କର

ଏ ବଡ଼-ବଡ଼ ଚକ୍ରବର୍ତ୍ତୀ ରାଜା ଥିଲେ, ସେମାନଙ୍କୁ ଏହା ଦିନ ଅଟେ କି ରାତି, ତାହା ଜଣା ପଡୁ ନଥିଲା । ସେ ସୂର୍ଯ୍ୟନାରାୟଣ ମଧ୍ୟ ଦେଖି ନଥିବେ, ତଥାପି ବିଶାଳ ରାଜ୍ୟ ସମ୍ଭାଳୁଥିଲେ । କାହିଁକିନା ପୁଣ୍ୟ କାମ କରେ ।

**ପ୍ରଶ୍ନକର୍ତ୍ତା :** ଶାଳିଭଦ୍ର ସେଠ୍‌ଙ୍କୁ ଦେବା-ଦେବୀ ଉପରୁ ସ୍ୱର୍ଣ୍ଣ ମୁଦ୍ରାର ବାକ୍ସ ଦେଉଥିଲେ, ତାହା କ'ଣ ସତ ?

**ଦାଦାଶ୍ରୀ :** ହଁ, ଦିଅନ୍ତି । ସବୁକିଛି ଦିଅନ୍ତି । ତାଙ୍କର ପୁଣ୍ୟ ଯେପର୍ଯ୍ୟନ୍ତ ଥିବ ସେପର୍ଯ୍ୟନ୍ତ କ'ଣ ନ ଦେବେ ? ଆଉ ଦେବା-ଦେବୀଙ୍କ ସହ ଋଣାନୁବନ୍ଧ ଥାଏ । ତାଙ୍କ ସମ୍ପର୍କୀୟ ଯଦି ସେଠାକୁ (ଦେବଲୋକ) ଯାଇଥିବେ ଏବଂ ପୁଣ୍ୟ ଥିବ ତେବେ ତାଙ୍କୁ କ'ଣ ନ ଦେବେ ?

ପୁଣ୍ୟଶାଳୀମାନଙ୍କୁ କମ୍ ପରିଶ୍ରମରେ ସବୁକିଛି ଫଳେ । ଏତେ ପର୍ଯ୍ୟନ୍ତ ପୁଣ୍ୟ ହୋଇପାରେ । ସହଜରୂପେ ବିଚାର କରନ୍ତି, କୌଣସି ପ୍ରୟାସ କରନ୍ତି ନାହିଁ ତଥାପି ପ୍ରତ୍ୟେକ ଜିନିଷ ବିଚାର ଅନୁସାରେ ମିଳିଯାଏ, ତାହା ସହଜ ପ୍ରୟାସ । ପ୍ରୟାସ ନିମିତ୍ତ ଅଟେ କିନ୍ତୁ ସହଜ ପ୍ରୟାସକୁ ପୁରୁଷାର୍ଥ କହିବା, ସେସବୁ ପରିଭାଷା ଭୁଲରେ ଭରି ହୋଇଛି ।

ଲକ୍ଷ୍ମୀ ଅର୍ଥାତ ପୁଣ୍ୟଶାଳୀ ଲୋକଙ୍କ କାମ ଅଟେ । ପୁଣ୍ୟର ହିସାବ ଏପରି ଅଟେ ଯେ ବହୁତ ପରିଶ୍ରମ କରେ ଏବଂ କମରୁ କମ ମିଳେ, ତାହା ବହୁତ ଅଳ୍ପ ସାଧାରଣ ପୁଣ୍ୟ କୁହାଯାଏ । ପୁଣି ଶାରୀରିକ ପରିଶ୍ରମ ବେଶୀ କରିବାକୁ ପଡ଼େ ନାହିଁ ଏବଂ ବାଣୀର ପରିଶ୍ରମ ବହୁତ କରିବାକୁ ପଡ଼େ, ଓକିଲଙ୍କ ପରି, ତାହା ଟିକିଏ ଅଧିକ ପୁଣ୍ୟ କୁହାଯାଏ, ମଜୁରିଆଙ୍କ ତୁଳନାରେ ଏବଂ ତାହାଠୁ ଆଗକୁ କ'ଣ ? ବାଣୀର ଝଂଝଟ ମଧ୍ୟ କରିବାକୁ ପଡ଼େ ନାହିଁ, ଶରୀରର ଝଂଝଟ ମଧ୍ୟ କରିବାକୁ ପଡ଼େ ନାହିଁ, ମାତ୍ର ମାନସିକ ଝଂଝଟରୁ କମାଏ, ସେ ଅଧିକ ପୁଣ୍ୟଶାଳୀ କୁହାଯାଏ । ଆଉ ତାହାଠୁ ବି ଆଗକୁ କ'ଣ ? ସଙ୍କଳ୍ପ କରିବା ମାତ୍ରେ ପ୍ରସ୍ତୁତ ହୋଇଯାଏ । ସଙ୍କଳ୍ପ କଲା ତାହା ପରିଶ୍ରମ । ସଙ୍କଳ୍ପ କଲା କି ଦୁଇଟି ବଙ୍ଗଳା, ଏ ଗୋଟିଏ ଗୋଦାମ । ଏପରି ସଙ୍କଳ୍ପ କରିବା ମାତ୍ରେ ସବୁ ପ୍ରସ୍ତୁତ ହୋଇଯାଏ, ସେ ମହାନ ପୁଣ୍ୟଶାଳୀ । ସଙ୍କଳ୍ପ କରେ ତାହା

ପରିଶ୍ରମ, ଖାଲି ସଙ୍କଳ୍ପ କରିବାକୁ ପଡ଼େ । ସଙ୍କଳ୍ପ ବିନା ହୁଏ ନାହିଁ । ଅଳ୍ପ ପରିଶ୍ରମ ବି ହେଉ, କିଛି ତ ଦରକାର ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ମନୁଷ୍ୟରେ ସେପରି ହୋଇପାରିବ ନାହିଁ ।

**ଦାଦାଶ୍ରୀ :** ମନୁଷ୍ୟରେ ମଧ୍ୟ ହୁଏ । କାହିଁକି ହେବ ନାହିଁ? ମନୁଷ୍ୟରେ ତ ଯେତେ ଦରକାର ସେତେ ହେବ ।

**ପ୍ରଶ୍ନକର୍ତ୍ତା :** ତାହା ତ ଏପରି କୁହାଯାଇଛି ଯେ ଦେବଲୋକରେ ଏପରି ହୁଏ ।

**ଦାଦାଶ୍ରୀ :** ଦେବଲୋକର ସବୁକିଛି ସିଦ୍ଧ ଥାଏ । କିନ୍ତୁ ଏଠାରେ ମଧ୍ୟ କାହା-କାହାକୁ ସଙ୍କଳ୍ପସିଦ୍ଧି ହୋଇଯାଏ । ସବୁ ହୁଏ, ନିଜ ପୁଣ୍ୟ ଦରକାର । ପୁଣ୍ୟ ନାହିଁ । ପୁଣ୍ୟ କମ୍ ହୋଇ ଗଲାଣି ।

ଯେତେ ପରିଶ୍ରମ ସେତେ ଅନ୍ତରାୟ(ପ୍ରତିବନ୍ଧକ), କାରଣ ପରିଶ୍ରମ କାହିଁକି କରିବାକୁ ପଡୁଛି ?

ଅର୍ଥାତ ଏହି ଜଗତରେ ସବୁଠାରୁ ଅଧିକ ପୁଣ୍ୟଶାଳୀ କିଏ ? ଯାହାକୁ କୌଣସି ବିଚାର ଆସେ, ତାହା ନିଶ୍ଚିତ କରେ ଏବଂ ବର୍ଷ ବର୍ଷ ପର୍ଯ୍ୟନ୍ତ ବିନା ଇଚ୍ଛାରେ, ବିନା ପରିଶ୍ରମରେ ମିଳି ଚାଲିଥାଏ, ସେ ଅଧିକ ପୁଣ୍ୟଶାଳୀ । ଦୁଇ ନମ୍ବରରେ, ଇଚ୍ଛା ହୁଏ, ଏବଂ ସେ ବାରମ୍ବାର ନିଶ୍ଚିତ କରେ ଏବଂ ସନ୍ଧ୍ୟାରେ ସହଜ ରୂପେ ମିଳିଯାଏ, ସେ ଦୁଇ ନମ୍ବରରେ ଆସେ । ତିନି ନମ୍ବରବାଲାକୁ ଇଚ୍ଛା ହୁଏ ଏବଂ ପ୍ରୟାସ କରେ ଏବଂ ପ୍ରାପ୍ତ ହୋଇଯାଏ । ଚାରି ନମ୍ବରବାଲାକୁ ଇଚ୍ଛା ହୁଏ ଏବଂ ଭୟଙ୍କର ପ୍ରୟାସ ଦ୍ୱାରା ପ୍ରାପ୍ତ ହୁଏ । ପଞ୍ଚମବାଲାକୁ ଇଚ୍ଛା ହୁଏ ଏବଂ ଭୟଙ୍କର ପ୍ରୟାସ ପରେ ମଧ୍ୟ ପ୍ରାପ୍ତ ହୁଏ ନାହିଁ । ଏହି ମଜୁରିଆ ମାନଙ୍କୁ କଠୋର ପରିଶ୍ରମ କରିବାକୁ ପଡ଼େ ଏବଂ ଉପରୁ ଗାଳି ଖାଆନ୍ତି, ତଥାପି ପଇସା ମିଳେ ନାହିଁ । ଯଦିବା ମିଳେ ତେବେ ମଧ୍ୟ ଠିକଣା ନାହିଁ ଯେ ଘରକୁ ଯାଇ ଖାଇବାକୁ ମିଳିବ । ସେମାନେ ସବୁଠାରୁ ଅଧିକ ପ୍ରୟାସ କରନ୍ତି, ତଥାପି ପ୍ରାପ୍ତି ହୁଏ ନାହିଁ ।

## ପୁଣ୍ୟରୁ ହିଁ ପ୍ରାପ୍ତ ସତ୍‌ସଙ୍ଗ

ତୁମେ ପୁଣ୍ୟ କରିଛ କି ନାହିଁ? ସେଥିପାଇଁ ତ ସି.ଏ. ହେଲ ।

**ପ୍ରଶ୍ନକର୍ତ୍ତା :** ଏ ପର୍ଯ୍ୟନ୍ତ ପାପ କରି ନାହିଁ, କେବଳ ପୁଣ୍ୟ କରିଛି ।

**ଦାଦାଶ୍ରୀ :** ତାହା ତ ଏପରି ଲାଗେ । ପାପ ମଧ୍ୟ କରିଛ କିନ୍ତୁ ପାପ କମ୍ କରିଥିବ, ପୁଣ୍ୟ ଅଧିକ କରିଥିବ । ସେଥିପାଇଁ ତ ଏହି ସତ୍‌ସଙ୍ଗରେ ଆସିବାର ଟାଇମ୍ ମିଳିଲା, ଏଠାକୁ ଆସିପାରିଲ, ନହେଲେ ସତ୍‌ସଙ୍ଗରେ ଆସିବାର ଟାଇମ୍ କାହାକୁ ଥାଏ ?

## ପୁଣ୍ୟ-ପାପର ପରିଣାମ ସ୍ୱରୂପ...

**ପ୍ରଶ୍ନକର୍ତ୍ତା :** ପାପ ଏବଂ ପୁଣ୍ୟ ସହ ତା'ର ସମ୍ବନ୍ଧ କିପରି ହୁଏ ?

**ଦାଦାଶ୍ରୀ :** ଏହି ପାପ ତାହା, ଏବେ ତୁମେ ଏଠାକୁ ଆସିଛ ତେବେ ତୁମେ ଏଠାରେ କାହାକୁ ଧକ୍କା ନ ଲାଗୁ ଏପରି ସମ୍ଭାଳି ଚାଲୁଛ ଏବଂ ଧକ୍କା ଲାଗିବା ପରି ଜାଗା ଯଦି ହୋଇଥିବ, ଏପରି ଭିଡ଼ ଜାଗା ହୋଇଥିବ, କିନ୍ତୁ ମନରେ ବିଚାର ଥାଏ ଯେ କାହା ଦେହରେ ନ ବାଜିଲେ ଭଲ, ଏପରି ଭାବନା ସହ ଯଦି ଏଠାକୁ ଆସ, ତେବେ ତୁମକୁ ପୁଣ୍ୟ ବନ୍ଧନ ହେବ ।

ଆଉ, ଭିଡ଼ ଅଛି ଏଣୁ ବାଜିଯାଇ ପାରେ, ଏପରି ଭାବନା ସହ ଯଦି ଆସ ତେବେ ପାପ ବନ୍ଧନ ହେବ ।

ନିଜଦ୍ୱାରା ଯଦି କାହାକୁ କିଞ୍ଚିତ ମାତ୍ର ଦୁଃଖ ହୋଇଯାଏ, ତେବେ ତା'କୁ ପାପର ହିଁ ବନ୍ଧନ ହୁଏ । କାହାକୁ ଯଦି ସୁଖ ପହଞ୍ଚେ, ଶାନ୍ତି ହୁଏ, କାହା ହୃଦୟକୁ ଶାନ୍ତି ପହଞ୍ଚେ, ତାହାଦ୍ୱାରା ନିରୋଳା ପୁଣ୍ୟ ବନ୍ଧନ ହୁଏ ।

ଏବେ ସେ ପୂର୍ବର ବନ୍ଧା ହୋଇଥିବା ପାପ, ତାହା ଏହି ଜନ୍ମରେ ପୁଣି ଉଦୟରେ ଆସେ । ଯୋଜନା ଯାହା ପୂର୍ବଜନ୍ମରେ ହୋଇଥିଲା, ତାହା ଏହି ଜନ୍ମରେ ଫଳୀଭୂତ ହୁଏ ।

ଯେବେ ପାପର ଉଦୟ ହୁଏ ସେତେବେଳେ ସାରା ଦିନ ମନରେ ବିଚାର, ଖରାପ ଚିନ୍ତାର ବିଚାର ଆସି ଚାଲିଥାଏ, ବାହାରେ ମଧ୍ୟ କ୍ଷତି ହୁଏ, ପିଲାମାନେ ବିରୋଧ କରନ୍ତି, ପାର୍ଟନର ସହିତ ଝଗଡ଼ା ହୁଏ, ଯେବେ ପାପର ଉଦୟ ହୁଏ ତେବେ । ଆଉ ଯେବେ ପୁଣ୍ୟର ଉଦୟ ହୁଏ ତେବେ ଶତ୍ରୁ ଯଦି ହୋଇଥିବ, ସେ ମଧ୍ୟ ଆସି କହିବ, 'ଆରେ ଚନ୍ଦୁଭାଇ, କିଛି କାମଦାମ ଥିଲେ ମୋତେ କହିବ...' ଆରେ, ତୁ ତ ଶତ୍ରୁ, କିନ୍ତୁ ସେତେବେଳେ ତ ତୁମର ପୁଣ୍ୟର ଉଦୟ ଆସିଥିଲା । ଅର୍ଥାତ

ପୁଣ୍ୟର ଉଦୟରେ ଶତ୍ରୁ ମିତ୍ର ହୋଇଯାଏ । ଆଉ ଯଦି ପାପର ଉଦୟ ହୁଏ, ତେବେ ପୁଅ ଶତ୍ରୁ ହୋଇଯାଏ । କେଉଁ ପୁଅ ବାପ ଉପରେ ଦାବି ଦାଖଲ କରେ କି ?

**ପ୍ରଶ୍ନକର୍ତ୍ତା :** ବିଲକୁଲ କରନ୍ତି ।

**ଦାଦାଶ୍ରୀ :** ଆରେ, ଜଣେ ବ୍ୟକ୍ତି ବାପ ଉପରେ ଦାବି ଦାଖଲ କରିଥିଲା, ସେ ପରେ କ'ଣ କ'ଣ କଲା ? ସେ ଦାବି ଦାଖଲ କରିବା ପରେ ଓକିଲକୁ ଏପରି କହିଲା, ବାପା ହାରିଗଲେ ସେଥିରେ ଅସୁବିଧା ନାହିଁ, ତାହା ତ ଭଲ ହେଲା ଏବେ । ନିଅନ୍ତୁ, ଏହା ଆପଣଙ୍କର ତିନିଶହ ଟଙ୍କା ଫିସ୍ । କିନ୍ତୁ ଏବେ ଆଉ ଥରେ ଚଲାନ୍ତୁ । ତେବେ ସେ କହେ, 'କାହିଁକି ଏବେ କ'ଣ ହେଲା ?' ତେବେ ସେ କହିଲା, 'ନାକ କଟେଇବାର ଅଛି ।' ଆରେ ମୁର୍ଖ, ବାପର ନାକ କଟେଇବାର ଅଛି ? ତେବେ କହେ, 'ହଁ, ସେଥିପାଇଁ ମୁଁ ଦେଢ଼ଶହ ଟଙ୍କା ଦେବି ।' ସେଠାରେ ଫାର୍ସ କରାଇଲା, ନାକ କଟାଇଲା । ଅର୍ଥାତ ଯେବେ ନିଜର ଭୁଲ ଥିବ ଏବଂ ପାପ (ର ଉଦୟ) ଥିବ ତେବେ, ପୁଅ ମଧ୍ୟ ଶତ୍ରୁ ହୋଇଯାଏ ।

## ପରମ ମିତ୍ର କିଏ ?

ପୁଣ୍ୟ ଭଲ ଥିବ ତେବେ ସବୁ ଭଲ । ସେଥିପାଇଁ ଯଦି ପୁଣ୍ୟରୂପୀ ମିତ୍ର ଥିବ ତେବେ ଯେଉଁଠି ଯାଅ ସେଠି ସୁଖ, ସୁଖ ଏବଂ ସୁଖ । ସେହି ମିତ୍ର ଥିବା ଦରକାର । ପାପରୂପୀ ମିତ୍ର ଆସିଲା ମାନେ ଧକ୍କା ମାରିବା ବିନା ରହିବ ନାହିଁ । ପୁଣି ସମଭାବରେ *ନିକାଲ୍* ହୁଏ ନାହିଁ, ସେତେବେଳେ ଚିଲ୍ଲାଇବାକୁ ପଡ଼େ ।

**ପ୍ରଶ୍ନକର୍ତ୍ତା :** ସେ ଯେଉଁ ଆପଣ କହିଛନ୍ତି ଯେ ପୁଣ୍ୟ କୌଣସି ବି ଜାଗାରେ ମିତ୍ର ପରି କାମ କରେ...

**ଦାଦାଶ୍ରୀ :** ହଁ, ଖରାପରୁ ଖରାପ ଜାଗାରେ, କୌଣସି ବି ଜାଗାରେ ଯେଉଁଠି ତୁମେ ଫଶିଯାଅ, ସେଠାରେ ପୁଣ୍ୟ କାର୍ଯ୍ୟାନ୍ୱିତ ହୋଇ ତୁମ ସାଥୀରେ ଠିଆ ହୁଏ ।

**ପ୍ରଶ୍ନକର୍ତ୍ତା :** ପାପ ଘରେ ମଧ୍ୟ ଦୁଃଖୀ କରାଏ ।

**ଦାଦାଶ୍ରୀ :** ପାପ ଘରେ ବିଛଣାରେ ମାରି ପକାଏ । ବିଛଣାରେ ଚିନ୍ତା କରାଏ, ଫାଷ୍ଟକ୍ଲାସ୍ ବିଛଣା ବିଛାଇଲେ, ତା' ଉପରେ ମଧ୍ୟ ଚିନ୍ତା କରାଏ, ପାପ ଛାଡ଼େ ନାହିଁ ନା ! ସେଥିପାଇଁ ସନ୍ତମାନେ କହିଛନ୍ତି, ପାପକୁ ଡର ।

## ମୋକ୍ଷ ପାଇଁ କିଭଳି ପୁଣ୍ୟ ଦରକାର ?

**ପ୍ରଶ୍ନକର୍ତ୍ତା :** ଯେପର୍ଯ୍ୟନ୍ତ ମୋକ୍ଷ ମାର୍ଗରେ ନ ପହଞ୍ଚିଛୁ, ସେପର୍ଯ୍ୟନ୍ତ ପୁଣ୍ୟ ନାମକ ଗାଇଡ୍‌ର ଆବଶ୍ୟକତା ପଡ଼େ ନା ?

**ଦାଦାଶ୍ରୀ :** ହଁ, ସେହି ପୁଣ୍ୟର ଗାଇଡ୍ ପାଇଁ ତ ଲୋକେ ଶୁଭାଶୁଭରେ ପଡ଼ିଛନ୍ତି ନା ! ସେହି ଗାଇଡ୍ ଦ୍ୱାରା ସବୁ ମିଳିବ । କିନ୍ତୁ ମୋକ୍ଷ ମାର୍ଗରେ ଯିବା ସମୟରେ ପୁଣ୍ୟ ବନ୍ଧନ ହୁଏ, କିନ୍ତୁ ଏପରି ପୁଣ୍ୟର ଆବଶ୍ୟକତା ନାହିଁ । ମୋକ୍ଷରେ ଯିବାବାଲାଙ୍କର ପୁଣ୍ୟ ତ କିଭଳି ହୋଇଥାଏ ? ତା'କୁ ଜଗତରେ ସୂର୍ଯ୍ୟନାରାୟଣ ଆସିଲେ କି ନାହିଁ, ତାହା ମଧ୍ୟ ଜଣା ପଡ଼େ ନାହିଁ ଏବଂ ପୁରା ଜୀବନ ବିତିଯାଏ, ସେଭଳି ପୁଣ୍ୟ ଥାଏ । ତେବେ ପୁଣି ଏହି ଅଳିଆ ପରି ପୁଣ୍ୟର କ'ଣ କରିବା ?

## ପାପର କେବେ ବିୟୋଗ ହୁଏ ନାହିଁ

**ପ୍ରଶ୍ନକର୍ତ୍ତା :** ଯେପର୍ଯ୍ୟନ୍ତ ଏହି ମାର୍ଗ ନ ମିଳିଛି, ସେପର୍ଯ୍ୟନ୍ତ ତ ସେହି ପୁଣ୍ୟର ଆବଶ୍ୟକତା ଅଛି ନା ?

**ଦାଦାଶ୍ରୀ :** ହଁ, ତାହା ଠିକ କଥା । କିନ୍ତୁ ଲୋକଙ୍କ ପାଖରେ କେଉଁଠି ପୁଣ୍ୟ ବଞ୍ଚିଛି ? କିଛି ବି ଠିକଣା ନାହିଁ । କାହିଁକିନା ତୁମର ଇଚ୍ଛା କ'ଣ ଅଛି ? ତେବେ କୁହେ ଯେ ଯଦି ପୁଣ୍ୟ କରିବୁ ତେବେ ପାପର ଉଦୟ ଆସିବ ନାହିଁ । ଯେବେକି ଭଗବାନ କ'ଣ କୁହନ୍ତି ? ତୁ ଯଦି ଶହେ ଟଙ୍କାର ପୁଣ୍ୟ ବାନ୍ଧିଲୁ ତେବେ ତୋ ଖାତାରେ ଶହେ ଟଙ୍କା ଜମା ହୋଇଯାଏ । ତା'ପରେ ଦୁଇ ଟଙ୍କା ଯେତେ ପାପ କଲୁ ଅର୍ଥାତ କେଉଁ ମନୁଷ୍ୟକୁ 'ହଟ, ହଟ, ଦୂରକୁ ଯା' ଏପରି କହିଲୁ, ସେଥିରେ ଅଳ୍ପ ତିରସ୍କାର ଆସିଗଲା । ଏବେ ତାହାର ଜମା-ଉଧାର ହୁଏ ନାହିଁ । ଭଗବାନ କୋଉ ଖେଳ ଘର ନୁହେଁ । ଯଦି ପୁଣ୍ୟ-ପାପର ଜମା-ଉଧାର ହେଉଥାନ୍ତା ତେବେ ତ ଏହି ବଣିକ ଜାତିଙ୍କ ପାଖରେ ଟିକିଏ ବି ଦୁଃଖ ନଥାନ୍ତା ! କିନ୍ତୁ ଏହା ତ ସୁଖ ବି ଭୋଗ ଏବଂ ଦୁଃଖ ବି ଭୋଗ, ଭଗବାନ କିଭଳି ପକ୍କା !

**ପ୍ରଶ୍ନକର୍ତ୍ତା :** ଯଦି ପୁଣ୍ୟର ରାସ୍ତାରେ ମନୁଷ୍ୟ ଚାଲେ ତେବେ ପୁଣି ପାପ କାହିଁକି ଆସେ ?

**ଦାଦାଶ୍ରୀ :** ତାହା ତ ସର୍ବଦା ତାହାର ନିୟମ ଅଛି ଯେ, କୌଣସି ବି କାର୍ଯ୍ୟ

ତୁମେ କର, ପୁଣ୍ୟର କାର୍ଯ୍ୟ ହୋଇଥିବ ତେବେ ତୁମର ଶହେ ଟଙ୍କା ଜମା ହୁଏ ଏବଂ ପାପ କାର୍ଯ୍ୟ ଯଦି ହୋଇଥିବ ତେବେ ପଛେ ଅଳ୍ପ ହୋଇଥାଉ, ଟଙ୍କାକର ହୋଇଥିବ ତେବେ ମଧ୍ୟ ତୁମ ଖାତାରେ ଉଧାରିରେ ଯାଏ ଏବଂ ସେହି ଶହେରୁ କିଛି ବି କମ ହୁଏ ନାହିଁ । ସେମିତି ଯଦି କମ ହେଉଥାନ୍ତା ତେବେ କୌଣସି ପାପ ଲାଗନ୍ତା ହିଁ ନାହିଁ । ଅର୍ଥାତ ଉଭୟ ଅଲଗା-ଅଲଗା ରହିଛି ଏବଂ ଉଭୟଙ୍କ ଫଳ ମଧ୍ୟ ଅଲଗା-ଅଲଗା ଆସେ । ପାପର ଫଳ ଯେବେ ଆସେ ସେତେବେଳେ ପିତା ଲାଗେ ।

ପୁଣ୍ୟରୁ ପାପ ଏହିପରି କମ ହୁଏ ନାହିଁ । ଯଦି କମି ଯାଉଥାନ୍ତା ତେବେ ତ ଲୋକେ ବହୁତ ଚାଲାକ । ବିଲକୁଲ ବି ଦୁଃଖ ଆସନ୍ତା ନାହିଁ । ଗୋଟିଏ ବି ପୁଅ ମରନ୍ତା ନାହିଁ ଅଥବା ଝିଅ ମରନ୍ତା ନାହିଁ । ଚାକର ଚୋରି କରନ୍ତେ ନାହିଁ । କିଛି ବି କରନ୍ତେ ନାହିଁ । କେବଳ ସୁଖ ଥାଆନ୍ତା । ଏହା ତ ଯେବେ ପୁଣ୍ୟ ଘେରି ନିଏ ତେବେ ଗାଡ଼ିରେ ମଉଜ-ସଉକ କରିବାକୁ ଦିଏ ଆଉ ପାପ ଘେରି ନିଏ ତେବେ ସେହି ଗାଡ଼ିରେ ଆକ୍ସିଡେଣ୍ଟ୍ କରାଏ । ଏହା ତ ସବୁ ଘେରି ନେବ । ଭିତରେ ଯେତିକି ଥିବ ସେତିକି ମାଲ୍ ଘେରି ନେବ । ନଥିଲେ କେଉଁଠୁ ଘେରିବ ? ଯାହା ଅଛି ତାହା ହିସାବ ଅଟେ । ସେଥିରେ କିଛି ବି ପରିବର୍ତ୍ତନ ହେବ ନାହିଁ ।

## ଅଜାଣତରେ ହୋଇଥିବା ପାପର ?

**ପ୍ରଶ୍ନକର୍ତ୍ତା :** ଏହା ମୁଁ ପାପ କଲି କି ପୁଣ୍ୟ କଲି, ଏପରି ଯଦି ବୁଝୁ ନଥିବ ତେବେ ପାପ-ପୁଣ୍ୟ ହୁଏ ? ତା'କୁ ଯଦି ବୁଝା ହିଁ ପଡୁନଥିବ ଯେ ଏହା ମୁଁ ପାପ କଲି ଏବଂ ଏହା ମୁଁ ପୁଣ୍ୟ କଲି ତେବେ ତାହାର ପରିଣାମ ତା'କୁ ଆସିବ ହିଁ ନାହିଁ ନା ?

**ଦାଦାଶ୍ରୀ :** ପ୍ରକୃତିର ନିୟମ ଏପରି ଅଟେ ଯେ ତୁମକୁ ବୁଝା ପଡୁ କି ନ ପଡୁ, ତଥାପି ତାହାର ପରିଣାମ ନ ଆସି ରହେ ନାହିଁ । ଏହି ଗଛକୁ କାଟିଲ, ସେଥିରେ ତୁମେ କୌଣସି ପାପ ଅବା ପୁଣ୍ୟ ବୁଝୁ ନଥିବ, କିନ୍ତୁ ତାହାଦ୍ୱାରା ଗଛକୁ ଦୁଃଖ ତ ହେଲା ନା ? ଏଣୁ ତୁମକୁ ପାପ ଲାଗିଲା । ତୁମେ ଚାରି ଘଣ୍ଟା ଲାଇନ୍‌ରେ ଛିଡ଼ା ହୋଇ ସଉଦାରେ କଣ୍ଟ୍ରୋଲ ଚିନିର ଏକ ବ୍ୟାଗ୍ ନେଇ ଯାଉଥିବ ଏବଂ ବ୍ୟାଗରେ କଣା ଥିବ ତେବେ ସେଥିରୁ ଚିନି ବାହାରେ ପଡୁଥିବ ତେବେ ସେହି ଚିନି କାହା କାମରେ ଆସିବ ନା ନାହିଁ ? ତଳେ ପିମ୍ପୁଡ଼ି ଥାଆନ୍ତି, ସେମାନେ ଚିନି ନେଇଯାନ୍ତି, ଏବଂ ପିମ୍ପୁଡ଼ିମାନଙ୍କର ମଙ୍ଗଳ ହୋଇଯାଏ । ଏବେ ଏହା ତୁମେ ଦାନ ଦେଲ, ଏପରି କୁହାଯିବ । ପଛେ ନ

ବୁଝି ହୋଇଥାଉ, କିନ୍ତୁ ଦାନ ତ ହୁଏ ନା ? ଆମ ଅଜାଣତରେ ହୋଇଥାଉ ନା କାହିଁକି, ତଥାପି ଦାନ ହୋଇ ଚାଲିଥାଏ ନା ! ଏବଂ ପିମ୍ପୁଡ଼ିମାନଙ୍କୁ ସୁଖ ହୁଏ ନା ? ତାହାଦ୍ୱାରା ତୁମକୁ ପୁଣ୍ୟ ବନ୍ଧନ ହୁଏ । ତାହାର ଫଳ ମଧ୍ୟ ଅଜାଣତରେ ଭୋଗି ନିଆଯାଏ ।

ଅନେକ କୁହନ୍ତି ଯେ ଅଜାଣତରେ ଯଦି ପାପ ହୋଇଯାଏ ତେବେ ତାହାର ଫଳ କିଛି ଆସେ ନାହିଁ । କାହିଁକି ଆସିବ ନାହିଁ ? ଆରେ, ଅଜାଣତରେ ନିଆଁ ଉପରେ ହାତ ରଖ ତେବେ ଜଣା ପଡ଼ିବ ଯେ ଫଳ ଆସେ କି ନାହିଁ । ଜାଣି-ଶୁଣି କରାଯାଇଥିବା ପାପ ଏବଂ ଅଜାଣତରେ କରାଯାଇଥିବା ପାପ, ଉଭୟ ଏକାପରି ଅଟନ୍ତି । କିନ୍ତୁ ଅଜାଣତରେ କରାଯାଇଥିବା ପାପର ଫଳ ଅଜାଣତରେ ଏବଂ ଜାଣି-ଶୁଣି କରାଯାଇଥିବା ପାପର ଫଳ ଜାଣି-ଶୁଣି ଭୋଗିବାକୁ ପଡ଼େ, ସେତିକି ଅନ୍ତର । ବାସ୍ ଏତିକି ନିୟମ । ଏହା ନିୟମାନୁସାରେ ଅଟେ ସବୁ, ଏହି ଜଗତ ବିଲକୁଲ ନିୟମବଦ୍ଧ ଅଟେ, ନ୍ୟାୟସ୍ୱରୂପ ଅଟେ ।

ଅଜାଣତରେ ଯାହା ହୁଏ, ତାହାର ଫଳ ଅଜାଣତରେ ମିଳେ । ତାହା ତୁମକୁ ବୁଝାଉଛି ।

ଜଣେ ବ୍ୟକ୍ତି ସାତ ବର୍ଷ ପର୍ଯ୍ୟନ୍ତ ରାଜ୍ୟ ଭୋଗ କରେ ଏବଂ ଅନ୍ୟ ଜଣେ ବ୍ୟକ୍ତି ମଧ୍ୟ ସାତ ବର୍ଷ ପର୍ଯ୍ୟନ୍ତ ରାଜ୍ୟ ଭୋଗ କରେ । ଏବେ ଉଭୟଙ୍କ ରାଜ୍ୟ ଭୋଗିବା ଏକାପରି ହିଁ ଅଟେ ଏବଂ ଉଭୟ ରାଜ୍ୟ ମଧ୍ୟ ଏକାପରି ଅଟେ, କିନ୍ତୁ ଏଥିରେ ଜଣେ ବ୍ୟକ୍ତି ତିନିବର୍ଷ ବୟସରେ ଗାଦିରେ ବସେ ଏବଂ ଦଶ ବର୍ଷ ବୟସରେ ରାଜ୍ୟ ଚାଲିଯାଏ ଏବଂ ଅନ୍ୟ ଜଣକ କୋଡ଼ିଏ ବର୍ଷ ବୟସରେ ଗାଦିରେ ବସେ, ସେ ସତେଇଶ ବର୍ଷ ବୟସରେ ଗାଦିଚ୍ୟୁତ ହୋଇଯାଏ ତେବେ କିଏ ବାସ୍ତବରେ ରାଜ୍ୟ ଭୋଗିଲା କୁହାଯିବ ? ପ୍ରଥମବାଲାର ପିଲାଦିନରେ ଚାଲିଗଲା, ତା'କୁ ଯଦି ଖେଳଣା ଦେବ ତେବେ ସେ ଖେଳିବା ପାଇଁ ବସିଯିବ !

ଏଣୁ ଏହା ନ ବୁଝି କରାଯାଇଥିବା ପୁଣ୍ୟର ଫଳ ଅଟେ । ସେ ନ ବୁଝି ଦର୍ଶନ କରିଥିଲା, ତେବେ ସେ ନ ବୁଝି ଫଳ ଭୋଗିବ । ବୁଝି-ବିଚାରି କରା ହୋଇଥିବା କାର୍ଯ୍ୟର ଫଳ ବୁଝିକି ଭୋଗେ !

ସେହିପରି ଜାଗୃତ ମାଇଣ୍ଡ୍‌ରେ କରାଯାଇଥିବା ପାପ ଜାଗୃତିପୂର୍ବକ ଭୋଗିବାକୁ ପଡ଼େ ଏବଂ ଅଜାଗୃତିପୂର୍ବକ କରାଯାଇଥିବା ପାପ ଅଜାଗୃତିପୂର୍ବକ ଭୋଗିବାକୁ ପଡ଼େ ।

ସେଥିରେ ପିଲାଦିନରେ ତିନି ବର୍ଷ ବୟସରେ ଯଦି ମା ମରିଯାଏ ତେବେ କାନ୍ଦେ ନାହିଁ । ତା'କୁ ଜଣା ବି ପଡ଼େ ନାହିଁ । ବୁଝେ ହିଁ ନାହିଁ, ସେଠାରେ କ'ଣ କରିବ ? ଆଉ ପଚିଶ ବର୍ଷର ହୋଇଥିବ ଏବଂ ତା' ମା ମରିଯାଏ ତେବେ ? ଅର୍ଥାତ ଇଏ ଜାଗୃତିପୂର୍ବକ ଦୁଃଖ ଭୋଗେ ଏବଂ ଶିଶୁ ଅଜାଣତରେ ଭୋଗେ ।

## ଦୋଷ ସେଠ୍‌ର ନା ନିଜ ପାପର ?

ସେଠ୍ ପୁରସ୍କାର ଦିଅନ୍ତି, ତାହା ନିଜର ବ୍ୟବସ୍ଥିତ ଅଟେ ଏବଂ ନିଜ ବ୍ୟବସ୍ଥିତ ଯଦି ଓଲଟା ଆସେ ସେତେବେଳେ ସେଠ୍ ମନରେ ଏପରି ହୁଏ ଯେ ଏଥର ତା'ର ଦରମା କାଟି ଦେବା ଉଚିତ । ଯେତେବେଳେ ସେଠ୍ ଦରମା କାଟିଦିଏ, ତେବେ ଚାକର ମନରେ ଏପରି ହୁଏ ଯେ ଏ ସେଠ୍ ଅଯୋଗ୍ୟ ଅଟେ । ଏ ଅଯୋଗ୍ୟ ମୋତେ ମିଳିଛି । କିନ୍ତୁ ଏପରି ଗୁଣାକାର କରିବାବାଲା ବ୍ୟକ୍ତିକୁ ଏହା ଜଣା ନାହିଁ ଯେ ଯଦି ସେ ଅଯୋଗ୍ୟ ହୋଇଥାନ୍ତା ତେବେ ପୁରସ୍କାର କାହିଁକି ଦେଉଥିଲା ? ଏଣୁ କିଛି ଭୁଲ ଅଛି । ସେଠ୍ ଟେଢ଼ା ନୁହେଁ । ଏହା ତ ନିଜ 'ବ୍ୟବସ୍ଥିତ' ବଦଳୁଛି ।

ଏସବୁ ପୁଣ୍ୟ ଚଲାଉଛି । ତୋତେ ହଜାର ଟଙ୍କା ଦରମା କିଏ ଦେଉଛି ? ଦରମା ଦେବାବାଲା ତୋ ସେଠ୍ ମଧ୍ୟ ପୁଣ୍ୟର ଅଧୀନରେ ଅଛି । ପାପ ଯଦି ଘେରି ନେବେ ତେବେ ସେଠ୍‌କୁ ମଧ୍ୟ କର୍ମଚାରୀ ମାରନ୍ତି ।

## ଜାଗୃତି, ପୁଣ୍ୟ ଏବଂ ପାପର ଉଦୟରେ...

**ପ୍ରଶ୍ନକର୍ତ୍ତା :** ଲୋକଙ୍କର ପୁଣ୍ୟ ଥିବ ସେଥିପାଇଁ ଏହି ସମ୍ପତ୍ତି ପ୍ରାପ୍ତ ହେଲା ।

**ଦାଦାଶ୍ରୀ :** ତାହା ସବୁ ପୁଣ୍ୟ ଅଟେ, ଜବରଦସ୍ତ ପୁଣ୍ୟ ଅଟେ, କିନ୍ତୁ ସମ୍ପତ୍ତିକୁ ସମ୍ଭାଳିବା କଷ୍ଟକର ହୋଇଯାଏ ।

**ପ୍ରଶ୍ନକର୍ତ୍ତା :** ହଁ, ଏହା ଠିକ କଥା । *ଉପାଧି* ହିଁ ଅଟେ ନା ? ଆରମ୍ଭ ପୁଣି ସେଇଠୁ ହିଁ ହୁଏ ।

**ଦାଦାଶ୍ରୀ :** ଯଦି ସମ୍ପତ୍ତି ନଥିବ ତେବେ ତାହା ପରି ତ ଆଉ କିଛି ନାହିଁ ।

**ପ୍ରଶ୍ନକର୍ତ୍ତା :** ପଇସା ନଥିବ, ସମ୍ପତ୍ତି ନଥିବ, ତେବେ ତାହା ପରି ଆଉ କିଛି ନାହିଁ ?

**ଦାଦାଶ୍ରୀ :** ହଁ, ତାହା ପରି ତ ଆଉ କିଛି ନାହିଁ । ସମ୍ପତ୍ତି ତ *ଉପାଧି* ଅଟେ । ସମ୍ପତ୍ତି ଯଦି ଏପଟେ ଧର୍ମରେ ମୋଡ଼ି ହୋଇ ଯାଇଥିବ ତେବେ ଅସୁବିଧା ନାହିଁ, ନହେଲେ *ଉପାଧି* ହୋଇଯାଏ । କାହାକୁ ଦେବା ? ଏବେ କେଉଁଠି ରଖିବା ? ସେସବୁ *ଉପାଧି* ହୋଇଯାଏ !

ସେଥିପାଇଁ ବହୁତ ପୁଣ୍ୟ ମଧ୍ୟ କାମକୁ ନୁହେଁ । ପୁଣ୍ୟ ବି ଯଦି ସନ୍ତୁଳିତ ଥିବ ତେବେ ଭଲ । ବହୁତ ପୁଣ୍ୟ ଥିବ ତେବେ ଶରୀର ଏତେ ବଡ଼ ହୋଇଯାଏ । କ'ଣ କରିବ ତାହାକୁ ? କେତେ କିଲୋର ଶରୀର ? ଆମେ ଉଠାଇବା ଏବଂ ପଲଙ୍କକୁ ବି ଉଠାଇବାକୁ ପଡ଼େ ନା ? ପଲଙ୍କ ବି ଚୁଁ-ଚୁଁ କରୁଥାଏ ନା ?

**ପ୍ରଶ୍ନକର୍ତ୍ତା :** ଯେବେ ପାପ ଏବଂ ପୁଣ୍ୟର ଉଦୟ ହୁଏ, ଜୀବନର ଘଟଣା ଉପରେ ତାହାର କିଛି ପ୍ରଭାବ ପଡ଼େ, ଏହା କିଛି ଉଦାହରଣ ଦେଇ ବୁଝାନ୍ତୁ ।

**ଦାଦାଶ୍ରୀ :** ପାପର ଉଦୟ ହୁଏ, ତେବେ ପ୍ରଥମେ ତ ଜବ୍ (ଚାକିରି) ଚାଲିଯାଏ । ପୁଣି କ'ଣ ହୁଏ ? ୱାଇଫ୍ ଏବଂ ପୁଅ ଥିବେ, ସେଠି ଷ୍ଟୋରକୁ ଯିବା ପାଇଁ ପଇସା ମାଗନ୍ତି । ତାହା ପୂର୍ବର ଅଭ୍ୟାସ ପଡ଼ି ରହିଛି, ସେହି ଅନୁସାରେ କହିବେ, ଦୁଇ ଶହ ଡଲାର ଦିଅନ୍ତୁ, ସେଥିପାଇଁ ପୁଣି କଳହ ହୁଏ । ଏଠି ସର୍ଭିସ ନାହିଁ ଆଉ କ'ଣ ପାଟି କରୁଛୁ ବିନା କାମରେ ? ଦୁଇ ଶହ-ଦୁଇ ଶହ ଡଲାର ଖର୍ଚ୍ଚ କରିବ ? ଏହା ଏହିପରି ଆରମ୍ଭ ହୁଏ, ସବୁ ଆରାମରେ । ତାହା ମଧ୍ୟ ପ୍ରତିଦିନ କଳହ, ପୁଣି ପତ୍ନୀ କହିବ, ବ୍ୟାଙ୍କରୁ ଆଣି ଦେଉନ । ତେବେ ବ୍ୟାଙ୍କରେ କିଛି ରହିବାକୁ ଦେବା ନା ନାହିଁ ? ଏଠି ଏହାର ଭଡ଼ା ଦେବାକୁ ପଡ଼ିବ । ଏସବୁ କରିବାକୁ ପଡ଼ିବ ନାହିଁ ? ବ୍ୟାଙ୍କରେ ପଇସା ଭରିବାକୁ ପଡ଼ିବ ନାହିଁ ? କିନ୍ତୁ ପତ୍ନୀ କଳହ କରେ, ମୁଣ୍ଡ ଖରାପ ହୋଇଯାଏ ଏପରି କଳହ କରେ । ଏସବୁ ଲକ୍ଷଣ ତ ରାତିରେ ଶୋଇବାକୁ ମଧ୍ୟ ଦିଏ ନାହିଁ, ଏଠି ଆମେରିକାରେ ଅନେକଙ୍କୁ ଏପରି ଅନୁଭବ ହେଉଥିବ ଏବଂ କୁହନ୍ତି ମଧ୍ୟ କଳିହୁଡ଼ି ଅଟେ । ବେଶ୍ୟା ଏବଂ କଳିହୁଡ଼ି, ଏପରି ଶବ୍ଦ କୁହନ୍ତି । ଅର୍ଥାତ୍ ଯେତେ ଶବ୍ଦ ଆସେ ସେତେ କଠୋର ଶବ୍ଦ କୁହେ । ଛାଡ଼େ ନାହିଁ ନା ? ତା'କୁ ହଇରାଣ କରୁଥାଏ ଦିନ-ରାତି, ବିଚରା ତା'ର ଏଥର ଚାକିରି ଚାଲିଗଲା, ଏକରେ ତ ଠିକଣା ନାହିଁ ଏବଂ ମୁଣ୍ଡ ଓଲଟା ହିଁ ଚାଲୁଥାଏ, ସେଥିରେ ପୁଣି ସେ ହଇରାଣ କରେ । ହୁଏ କି ନାହିଁ ଏପରି ?

**ପ୍ରଶ୍ନକର୍ତ୍ତା :** ହୁଏ, ହୁଏ ।

**ଦାଦାଶ୍ରୀ :** କିଛି ଜାଗାରେ ହେଉଥିବ ନା ବହୁତ ଜାଗାରେ ? ଜବ୍ ଚାଲି ଯାଇଥିବ, ସେମାନେ ମୋତେ ଭେଟନ୍ତି, କୁହନ୍ତି 'ଦାଦା ଜବ୍ ଚାଲିଯାଇଛି, କ'ଣ କରିବି ?'

ଜବ୍ ଚାଲିଯାଇଥିବ ଏବଂ ଦିନ ବହୁତ ଭଲ ରୂପେ ବିତାଏ, ସେ ବିବେକୀ ମନୁଷ୍ୟ କୁହାଯାଏ । ପତ୍ନୀ ଏବଂ ନିଜେ ଦୁହେଁ ଭଲ ରୂପେ ଦିନ ବିତାନ୍ତି, ସେମାନେ ବିବେକୀ । ନୂଆ କପଡ଼ା ଆଣନ୍ତି ନାହିଁ ଏବଂ ପୂର୍ବର ଯେଉଁ କପଡ଼ା ଥାଏ, ତାହା ପିନ୍ଧନ୍ତି । ଯେପର୍ଯ୍ୟନ୍ତ ଚାକିରି ନ ମିଳେ, ସେପର୍ଯ୍ୟନ୍ତ ସେତିକି ଟାଇମ୍ ବିତେଇ ଦିଅନ୍ତି । ଏବଂ ପତିମାନଙ୍କୁ ଉତ୍ସାହୀ ରହିବା ଉଚିତ୍, ଜବ୍ ଯଦି ଚାଲିଯାଏ ସେଥିରେ ଡରିବା ଉଚିତ୍ ନୁହେଁ । ଅଳ୍ପ ଘାସ କାଟି ଅବା ଏମିତି-ସେମିତି କରି, ସନ୍ଧ୍ୟାରେ ଦଶ-କୋଡ଼ିଏ ଡଲାର ନେଇ ଆସେ, ତେବେ ବହୁତ ହେଲା, ଅଭାବ ତ ପଡ଼ିବ ନାହିଁ । ତେବେ କୁହେ, ନା, ମୋତେ ଯଦି ଏମାନେ ଦେଖିଦେବେ ତେବେ କ'ଣ କହିବେ ? ଆରେ ଭାଇ, ସେମାନଙ୍କ ପାଖରେ ତ ଜବ୍ ଅଛି, ତୋ ପାଖରେ ଜବ୍ ନାହିଁ, ତୁ ପ୍ରଥମେ ଏହାର ଉପାୟ କର । କାହାର ପ୍ରତିଷ୍ଠା ଏହି ଦୁନିଆରେ ରହି ନାହିଁ । ସମସ୍ତେ କପଡ଼ା ପିନ୍ଧି ନେଇଛନ୍ତି, ସେଥିପାଇଁ ପ୍ରତିଷ୍ଠିତ ଦେଖା ଯାଉଛନ୍ତି ଆଉ କପଡ଼ା କାଢ଼ି ଦେବା ତେବେ ସବୁ ନିର୍ଲଜ୍ଜ ଦେଖାଯିବେ । କେବଳ ଏକୁଟିଆ ଜ୍ଞାନୀପୁରୁଷ କପଡ଼ା କାଢ଼ିଦେଲେ ମଧ୍ୟ ନିର୍ଲଜ୍ଜ ଦେଖାଯିବେ ନାହିଁ । ନହେଲେ ଏ ପୁରା ଜଗତ ନିର୍ଲଜ୍ଜ ଅଟେ ।

**ପ୍ରଶ୍ନକର୍ତ୍ତା :** ଗୋଟିଏ ପଟେ ଜବ୍ ଯାଇଥିବ ଏବଂ ଅନ୍ୟ ପଟେ ଦାଦା ମିଳିଥିବେ, ତେବେ ତାହା ପାପ ଏବଂ ପୁଣ୍ୟ ଉଭୟ ଏକାଠି ହୋଇଗଲେ ?

**ଦାଦାଶ୍ରୀ :** ଏହା ପାପର ଉଦୟ ଭଲ ଆସିଲା ଯେ ଦାଦା ମିଳିଗଲେ, ଏଣୁ ଆମକୁ ପାପରେ କ'ଣ କରିବା ଉଚିତ ତାହା ବତାଇ ଦିଅନ୍ତି ଏବଂ ଆମର ସବୁ ଠିକଣାକୁ ନେଇ ଆସନ୍ତି । ଆଉ ପୁଣ୍ୟର ଉଦୟ ଥିବ ଏବଂ ଦାଦା ମିଳିଥିବେ, ତେବେ ସେଥିରେ ଆମକୁ ଦାଦାଙ୍କ ପାଖରୁ କ'ଣ ଜାଣିବାକୁ ମିଳିଲା ? ଆଉ ପାପର ଉଦୟ ଥିବ ତେବେ ଦାଦା କହିବେ ଯେ ଦେଖ ଭାଇ, ଏହିପରି ରହିବୁ ହେଲା, ଏବେ ଏମିତି କର, ସେମିତି କର ଏବଂ ସବୁ ଠିକଣାକୁ ନେଇ ଆସନ୍ତି । ଅର୍ଥାତ ପାପର ଉଦୟ ଥିବ ଏବଂ ଦାଦା ମିଳିଯାନ୍ତି, ତାହା ବହୁତ ଭଲ କୁହାଯିବ ।

## ରହସ୍ୟ, ବୁଦ୍ଧିର ଆଶୟର...

ପ୍ରତ୍ୟେକ ବ୍ୟକ୍ତିକୁ ନିଜ ଘରେ ଆନନ୍ଦ ଆସେ । କୁଡ଼ିଆବାଲାକୁ ବଙ୍ଗଳାରେ ଆନନ୍ଦ ଆସେ ନାହିଁ ଏବଂ ବଙ୍ଗଳାବାଲାକୁ କୁଡ଼ିଆରେ ଆନନ୍ଦ ଆସେ ନାହିଁ । ତାହାର କାରଣ ତା'ର ବୁଦ୍ଧିର ଆଶୟ ଅଟେ । ଯିଏ ଯେପରି ବୁଦ୍ଧିର ଆଶୟରେ ଭରି ଆଣିଥାଏ, ସେହିପରି ହିଁ ତା'କୁ ମିଳେ । ବୁଦ୍ଧିର ଆଶୟରେ ଯାହା ଭରା ହୋଇଥାଏ, ତାହାର ଦୁଇଟି ଫଟୋ ଉଠେ, (୧) ପାପଫଳ ଏବଂ (୨) ପୁଣ୍ୟଫଳ । ପ୍ରତ୍ୟେକ ମନୁଷ୍ୟ ବୁଦ୍ଧିର ଆଶୟର ବିଭାଜନ କରିଛନ୍ତି । ସେହି ଶହେ ପ୍ରତିଶତରୁ ଅଧିକତର ପ୍ରତିଶତ ଗାଡ଼ି-ବଙ୍ଗଳା, ପୁଅ-ଝିଅ ଏବଂ ପତ୍ନୀ, ସେ ସମସ୍ତଙ୍କ ପାଇଁ ଭରିଛନ୍ତି । ତେବେ ସେ ସବୁ ପ୍ରାପ୍ତି ହେବାରେ ପୁଣ୍ୟ ଖର୍ଚ୍ଚ ହୋଇଗଲା ଏବଂ ଧର୍ମ ପାଇଁ ଅତି କଷ୍ଟରେ ଏକ-ଦୁଇ ପ୍ରତିଶତ ହିଁ ବୁଦ୍ଧିର ଆଶୟରେ ଭରିଲେ ।

**ପ୍ରଶ୍ନକର୍ତ୍ତା :** ବୁଦ୍ଧିର ଆଶୟ ଟିକିଏ ବିଶେଷ ରୂପରେ ବୁଝାନ୍ତୁ ନା, ଦାଦା ।

**ଦାଦାଶ୍ରୀ :** ବୁଦ୍ଧିର ଆଶୟ ଅର୍ଥାତ 'ମୋତେ କେବଳ ଚୋରି କରି ହିଁ ଚଳାଇବାର ଅଛି । କେବଳ କଳାବଜାରି କରି ଚଳାଇବାର ଅଛି ।' କେହି କହିବ, 'ମୋତେ କେବେ ବି ଚୋରି କରିବାର ନାହିଁ ।' କେହି କହିବ, 'ମୋତେ ଏପରି ଭୋଗି ନେବାର ଅଛି', ସେ ସେପରି ଭୋଗିବା ପାଇଁ ଏକାନ୍ତ ଜାଗା ମଧ୍ୟ ପ୍ରସ୍ତୁତ କରିଦିଏ । ସେଥିରେ ପୁଣି ପାପ-ପୁଣ୍ୟ କାମ କରେ । ଯାହା କିଛି ଭୋଗିବାର ଇଚ୍ଛା କରିଥାଏ, ସେହିପରି ସବୁ ତା'କୁ ମିଳିଯାଏ । ମାନି ହେବ ନାହିଁ ଏପରି ସବୁ ମଧ୍ୟ ତା'କୁ ମିଳିଯାଏ । କାହିଁକିନା ତା'ର ବୁଦ୍ଧିର ଆଶୟରେ ଥିଲା ଏବଂ ଯଦି ପୁଣ୍ୟ କାମ କରେ ତେବେ କେହି ତା'କୁ ଧରି ବି ପାରିବେ ନାହିଁ, ପଛେ ଯେତେ ବି ଚକ୍କର ଲଗାଅ ! ଆଉ ଯଦି ପୁଣ୍ୟ ପୂରା ହୋଇଯାଏ, ତେବେ ଏମିତି ହିଁ ଧରା ପଡ଼ିଯାଏ । ଛୋଟପିଲା ମଧ୍ୟ ତା'କୁ ଧରି ପକାଏ ଯେ, 'ଏମିତି ଘୋଟାଲା ଅଛି ଏଠି !'

ଦୁଇ ଚୋର ଚୋରି କରନ୍ତି, ସେଥିରୁ ଜଣେ ଧରା ପଡ଼ିଯାଏ ଏବଂ ଅନ୍ୟ ଜଣକ ସହଜରେ ଖସିଯାଏ, ତାହା କ'ଣ ସୂଚିତ କରେ ? ଚୋରି କରିବାର ଅଛି, ତାହା ବୁଦ୍ଧିର ଆଶୟରେ ତ ଉଭୟ ଚୋର ଆଣିଥିଲେ । କିନ୍ତୁ ସେମାନଙ୍କ ମଧ୍ୟରୁ ଯିଏ ଧରା ପଡ଼ିଗଲା, ତା'ର ପାପଫଳ ଉଦୟରେ ଆସିଲା ଏବଂ ଉଦୟରେ ଆସି ଖର୍ଚ୍ଚ ହୋଇଗଲା । ଯେବେକି ଅନ୍ୟ ଜଣକ ଯିଏ ଖସିଗଲା, ତା'ର ପୁଣ୍ୟ ସେଥିରେ ଖର୍ଚ୍ଚ

ହୋଇଗଲା । ସେହିପରି ପ୍ରତ୍ୟେକଙ୍କର ବୁଦ୍ଧିର ଆଶୟରେ ଯାହା ଥାଏ, ସେଥିରେ ପାପ ଏବଂ ପୁଣ୍ୟ କାର୍ଯ୍ୟ କରନ୍ତି । କେହି, ବୁଦ୍ଧିର ଆଶୟରେ ଲକ୍ଷ୍ମୀ ପ୍ରାପ୍ତ କରିବାର ଅଛି ଏପରି ଭରି ଆଣିଲା ଏବଂ ସେଥିରେ ଯଦି ତା'ର ପୁଣ୍ୟ ଖର୍ଚ୍ଚ ହୁଏ ତେବେ ଲକ୍ଷ୍ମୀର ବୃଷ୍ଟି ହୋଇଯାଏ । ଆଉ ଜଣେ ବୁଦ୍ଧିର ଆଶୟରେ ଲକ୍ଷ୍ମୀ ପ୍ରାପ୍ତ କରିବାର ଅଛି ଏପରି ନେଇକି ତ ଆସିଲା, କିନ୍ତୁ ସେଥିରେ ପୁଣ୍ୟ କାମରେ ଆସିବା ବଦଳରେ ପାପଫଳ ସାମ୍ନାକୁ ଆସିଲା । ତା'କୁ ଲକ୍ଷ୍ମୀଜୀ ମୁହଁ ବି ଦେଖାନ୍ତି ନାହିଁ । ଆରେ, ଏହା ତ ଏତେ ଅଧିକ ସଚ୍ଚୋଟ ହିସାବ ଅଟେ ଯେ କାହାର ଟିକିଏ ବି ଚାଲେ ସେପରି ନୁହେଁ । ଯେବେକି ଏ ଅକର୍ମୀ ମାନି ନିଅନ୍ତି ଯେ ମୁଁ ଦଶଲକ୍ଷ ଟଙ୍କା କମାଇଲି । ଆରେ, ଏହା ତ ପୁଣ୍ୟ ଖର୍ଚ୍ଚ ହେଲା ଏବଂ ତାହା ବି ଓଲଟା ରାସ୍ତାରେ । ତାହା ଅପେକ୍ଷା ତୋ ବୁଦ୍ଧିର ଆଶୟ ବଦଳା । ଧର୍ମ ପାଇଁ ହିଁ ବୁଦ୍ଧିର ଆଶୟ ବାନ୍ଧିବା ପରି ଅଟେ । ଏ ଜଡ଼ ବସ୍ତୁ ଗାଡ଼ି, ବଙ୍ଗଳା, ରେଡ଼ିଓ ସେ ସବୁର ଜପ କଲ, କେବଳ ତାହା ପାଇଁ ହିଁ ବୁଦ୍ଧିର ଆଶୟ ବାନ୍ଧିବା ପରି ନୁହେଁ । କେବଳ ଧର୍ମ ପାଇଁ - ଆତ୍ମଧର୍ମ ପାଇଁ ହିଁ ବୁଦ୍ଧିର ଆଶୟ ରଖ । ଏବେ ତୁମକୁ ଯାହା ପ୍ରାପ୍ତ ହୋଇଛି ତାହା ପଛେ ଥାଉ, କିନ୍ତୁ ଏବେ ତ କେବଳ ଆଶୟ ବଦଳାଇ ସମ୍ପୂର୍ଣ୍ଣ ଶହେ ପ୍ରତିଶତ ଧର୍ମ ପାଇଁ ହିଁ ରଖ ।

ମୁଁ ମୋ ବୁଦ୍ଧିର ଆଶୟରେ ପଞ୍ଚାନବେ ପ୍ରତିଶତ ଧର୍ମ ଏବଂ ଜଗତ କଲ୍ୟାଣର ଭାବନା ଆଣିଛି । ଅନ୍ୟ କୌଣସି ଜାଗାରେ ମୋ ପୁଣ୍ୟ ଖର୍ଚ୍ଚ ହୋଇନାହିଁ । ପଇସା, ଗାଡ଼ି, ବଙ୍ଗଳା, ପୁଅ, ଝିଅ କେଉଁଠି ବି ନୁହେଁ ।

ମୋତେ ଯିଏ ଯିଏ ଭେଟିଲେ ଏବଂ ଜ୍ଞାନ ନେଇ ଗଲେ, ସେମାନେ ଦୁଇ-ପାଞ୍ଚ ପ୍ରତିଶତ ଧର୍ମ ପାଇଁ, ମୁକ୍ତି ପାଇଁ ରଖିଥିଲେ । ସେଥିପାଇଁ ମୁଁ ଦେଖା ହେଲି । ମୁଁ ପୁରା ଶହେ ପ୍ରତିଶତ ଧର୍ମ ପାଇଁ ରଖିଥିଲି, ସେଥିପାଇଁ ସବୁ ଦିଗରୁ ମୋତେ ଧର୍ମ ପାଇଁ 'ନୋ ଅବଜେକ୍ସନ୍ ସାର୍ଟିଫିକେଟ୍' ମିଳିଛି ।

ଅନନ୍ତ ଜନ୍ମରୁ ମୋକ୍ଷର *ନିୟାଣା* (ନିଜର ସମସ୍ତ ପୁଣ୍ୟ ଲଗାଇ କୌଣସି ଗୋଟିଏ ଜିନିଷର କାମନା କରିବା) କରିଛ, କିନ୍ତୁ ପୁରା ଦୃଢ଼ *ନିୟାଣା* କରି ନାହଁ । ଯଦି ମୋକ୍ଷ ପାଇଁ ହିଁ ଦୃଢ଼ *ନିୟାଣା* କରିଥିବ ତେବେ ସବୁ ପୁଣ୍ୟ ସେଥିରେ ହିଁ ଖର୍ଚ୍ଚ ହେବ । ଆତ୍ମା ପାଇଁ ବଞ୍ଚିବା ତାହା ପୁଣ୍ୟ ଅଟେ ଏବଂ ସଂସାର ପାଇଁ ବଞ୍ଚିବା ତେବେ ନିରୋଳା ପାପ ଅଟେ ।

## ପସନ୍ଦ, ପୁଣ୍ୟର ଭାଗବାଣ୍ଟର

ଏଣୁ ଏହି ପୁଣ୍ୟ, ତାହା ଆମେ ଯେପରି ମାଗୁ, ସେଥିରେ ବାଣ୍ଟି ହୋଇଯାଏ । କେହି କହିବ, ମୋତେ ଏତିକି ମଦିରା ଦରକାର, ଏହା ଦରକାର, ତାହା ଦରକାର । ତେବେ ସେଥିରେ ବାଣ୍ଟି ହୋଇଯାଏ । କେହି କହିବ, ମୋତେ ଗାଡ଼ି ଦରକାର ଏବଂ ଘର । ତେବେ କୁହେ, ଦୁଇଟି ରୁମ୍ ଥିବ ତେବେ ଚଳିବ । ଦୁଇ ରୁମ୍‌ର ତା'କୁ ସନ୍ତୋଷ ହୁଏ ଏବଂ ଗାଡ଼ି ଚଲାଇବାକୁ ମିଳେ ।

ଏ ଛୋଟ-ଛୋଟ କୁଡ଼ିଆରେ ଯେଉଁ ରହୁଛନ୍ତି, ସେମାନଙ୍କୁ ସନ୍ତୋଷ ରହୁଥିବ ? ପ୍ରକୃତ ସନ୍ତୋଷ । ସେଥିପାଇଁ ତ ତାଙ୍କୁ ସେହି ଘର ପସନ୍ଦ ଆସେ । ସେହିପରି ହୋଇଥିବ ତେବେଯାଇ ଭଲ ଲାଗେ । ଏବେ ସେ ଆଦିବାସୀଙ୍କୁ ତୁମ ଘରକୁ ଆଣି ଦେଖ । ଚାରିଦିନ ରଖି ଦେଖ ? ସେ ଶାନ୍ତିରେ ରହି ପାରିବ ନାହିଁ । କାହିଁକିନା ତା'ର ବୁଦ୍ଧିର ଆଶୟ ଅଛି ଏବଂ ସେହି ଅନୁସାରେ ପୁଣ୍ୟର ଡିଭିଜନ୍ ହୁଏ । ଟେଣ୍ଡର୍ ଅନୁସାରେ ଆଇଟମ୍ ମିଳେ ।

**ପ୍ରଶ୍ନକର୍ତ୍ତା :** ଯଦି ପୁଣ୍ୟ-ପାପର ହିଁ ଅଧୀନ ଅଟେ ତେବେ ପୁଣି ଟେଣ୍ଡର୍ ଭରିବାର କେଉଁଠି ରହିଲା ?

**ଦାଦାଶ୍ରୀ :** ଏହି ଟେଣ୍ଡର୍ ଭରାଯାଏ, ତାହା ପାପ-ପୁଣ୍ୟର ଉଦୟ ଅନୁସାରେ ହିଁ ଭରାଯାଏ । ଏଣୁ ମୁଁ କୁହେ ସତ ଯେ 'ଟେଣ୍ଡର୍' ଭର, ମାତ୍ର ମୁଁ ଜାଣିଛି ଯେ କେଉଁ ଆଧାରରେ ଟେଣ୍ଡର୍ ଭରାଯାଏ । ଏହି ଦୁଇ ନିୟମରୁ ବାହାରେ ଚାଲି ହେବ ଏପରି ନୁହେଁ ।

ମୁଁ ବହୁତ ଲୋକଙ୍କୁ ମୋ ପାଖକୁ 'ଟେଣ୍ଡର୍' ଭରି ଆଣିବାକୁ କହେ । କିନ୍ତୁ କେହି ଭରି ଆଣି ନାହାନ୍ତି । କିପରି ଭରିବେ ? ତାହା ପାପ-ପୁଣ୍ୟର ଅଧୀନ ଅଟେ । ସେଥିପାଇଁ ଯଦି ପାପର ଉଦୟ ହୋଇଥିବ ଏବଂ ବହୁତ ଧାଁ-ଦୌଡ଼ କରିବ ତେବେ, ଓଲଟା ଯାହା ଅଛି ତାହା ମଧ୍ୟ ଚାଲିଯିବ । ସେଥିପାଇଁ ଘରକୁ ଯାଇ ଶୋଇ ଯା ଏବଂ ଅଳ୍ପ-ଅଳ୍ପ ସାଧାରଣ କାମ କର, ଆଉ ପୁଣ୍ୟର ଉଦୟ ହୋଇଥିବ ତେବେ ଭଟକିବାର ଆବଶ୍ୟକତା ହିଁ କ'ଣ ? ଘରେ ବସି ଏମିତି ସାଧାରଣ କାମ କଲେ ସବୁ ଆସି ମିଳିଯାଏ, ସେଥିପାଇଁ ଉଭୟ ସ୍ଥିତିରେ ଧାଁ-ଦୌଡ଼ କରିବା ପାଇଁ ମନା କରୁଛି ।

କଥା କେବଳ ବୁଝିବାର ହିଁ ଆବଶ୍ୟକତା ଅଛି ।

## ପୁଣ୍ୟର ଖେଳ ସାମ୍ନାରେ ବୃଥା ପ୍ରୟାସ କାହିଁକି ?

ପୁଣ୍ୟ ଯଦି ଫଳ ଦେବାପାଇଁ ସମ୍ମୁଖ ହୋଇଛି, ତେବେ କାହିଁକି ବୃଥା ପ୍ରୟାସରେ ଲାଗିଛୁ ? ଆଉ ଯଦି ପୁଣ୍ୟ ଫଳ ଦେବାପାଇଁ ସମ୍ମୁଖ ହୋଇନାହିଁ ତେବେ ଅଯଥାରେ ଦଖଲ କାହିଁକି କରୁଛୁ ? ସମ୍ମୁଖ ହୋଇନାହିଁ ଏବଂ ତୁ ଦଖଲ କରିବୁ ତେବେ ମଧ୍ୟ କିଛି ହେବାର ନାହିଁ । ଆଉ ସମ୍ମୁଖ ହୋଇଥିବ ତେବେ ଦଖଲ କାହିଁକି କରୁଛୁ ତୁ? ପୁଣ୍ୟ ଯେବେ ଫଳ ଦେବାପାଇଁ ପ୍ରସ୍ତୁତ ହେବ ତେବେ ସମୟ ଲାଗିବ ନାହିଁ ।

## ପାପ-ପୁଣ୍ୟର ଲିଙ୍କ୍...

ଯଦି କେହି ବାହାର ବ୍ୟକ୍ତି ମୋ ପାଖକୁ ବ୍ୟବହାରରେ ଉପଦେଶ ନେବାପାଇଁ ଆସେ ଯେ, 'ମୁଁ ପଛେ ଯେତେ ବି ମୁଣ୍ଡ ପିଟୁଛି ତଥାପି କିଛି ହେଉ ନାହିଁ ।' ତେବେ ମୁଁ କହେ, 'ଏବେ ତୋର ପାପର ଉଦୟ ଅଛି । ତୁ ଯଦି କାହା ପାଖରୁ ଟଙ୍କା ଉଧାର ନେଇ ଆସିବୁ ତେବେ ରାସ୍ତାରେ ତୋର ପକେଟମାର୍ ହୋଇଯିବ! ଏଣୁ ଏବେ ଆରାମରେ ଘରେ ବସି, ତୁ ଯେଉଁ ଶାସ୍ତ୍ର ପଢୁଥିବୁ ତାହା ପଢ଼ ଏବଂ ଭଗବାନଙ୍କ ନାମ ନେଉ ଥା ।'

ମୁଁ ୧୯୬୮ରେ ଜୟଗଡ଼ର ଜେଟି(ସାମୁଦ୍ରିକ ସେତୁ) ତିଆରି କରୁଥିଲି । ସେଠି ଜଣେ କଣ୍ଟ୍ରାକ୍ଟର ମୋ ପାଖକୁ ଆସିଲା । ସେ ମୋତେ ପଚାରିଲା, 'ମୁଁ ମୋ ଗୁରୁ ମହାରାଜଙ୍କ ପାଖକୁ ଯାଉଛି । ପ୍ରତ୍ୟେକ ବର୍ଷ ମୋ ପଇସା ବଢ଼ି ଚାଲୁଛି । ମୋର ଇଚ୍ଛା ନାହିଁ, ତଥାପି ବଢୁଛି, ତେବେ କ'ଣ ତାହା ଗୁରୁଙ୍କ କୃପା ଅଟେ ?' ମୁଁ ତା'କୁ କହିଲି, 'ତାହା ଗୁରୁଙ୍କ କୃପା ଅଟେ, ଏପରି ମାନିବୁ ନାହିଁ । ଯଦି ପଇସା ଚାଲିଯିବ ତେବେ ତୋତେ ଏପରି ଲାଗିବ ଯେ ଆଣ, ଗୁରୁକୁ ପଥର ମାରିବି !'

ଏଥିରେ ଗୁରୁ ତ ନିମିତ୍ତ ଅଟନ୍ତି, ତାଙ୍କ ଆଶିଷ ନିମିତ୍ତ ଅଟେ । ଗୁରୁଙ୍କୁ ହିଁ ଦରକାର ଥିବ ତେବେ ଚାରି ଅଣା ମିଳେ ନାହିଁ ନା! ସେଥିପାଇଁ ପୁଣି ସେ ମୋତେ ପଚାରିଲା ଯେ 'ମୋତେ କ'ଣ କରିବା ଉଚିତ ?' ମୁଁ କହିଲି, 'ଦାଦାଙ୍କ ନାମ ନେବୁ ।' ଏପର୍ଯ୍ୟନ୍ତ ତୋ ପୁଣ୍ୟର ଲିଙ୍କ୍ ଆସିଥିଲା । ଲିଙ୍କ୍ ଅର୍ଥାତ ଅନ୍ଧାରରେ ତାସ୍ ଉଠାଏ ତେବେ ଚଉକା ଆସେ, ପୁଣି ପଞ୍ଚା ଆସେ, ପୁଣି ଆଉଥରେ ଉଠାଏ ତେବେ ଛକା ଆସେ । ତେବେ ଲୋକେ କହିବେ ଯେ, 'ବାଃ ସେଠ୍, ବାଃ ସେଠ୍, ମାନିବାକୁ

ପଡ଼ିବ ।' ସେହିପରି ତୋତେ ଶହେ ସାତ ଥର ପର୍ଯ୍ୟନ୍ତ ଠିକ ପଡ଼ିଛି । କିନ୍ତୁ ଏବେ ବଦଳିବାର ଅଛି । ଏଣୁ ସାବଧାନ ରହିବୁ । ଏବେ ଯଦି ତୁ ଉଠେଇବୁ ତେବେ ସତାବନ ପରେ ତିନି ଆସିବ ଏବଂ ତିନି ପରେ ଶହେ ଏଗାର ଆସିବ ! ସେତେବେଳେ ଲୋକେ ତୁମକୁ ବୁଦ୍ଧୁ କହିବେ । ଏଣୁ ଏହି ଦାଦାଙ୍କ ନାମ ଛାଡ଼ିବୁ ନାହିଁ । ନହେଲେ ମରିଯିବୁ ।

ପୁଣି ମୁଁ ମୁମ୍ବାଇ ଆସିଗଲି । ସେ ଦୁଇ-ଚାରି ଦିନ ପରେ ଏହି କଥା ଭୁଲିଗଲା । ପରେ ତା'କୁ ଥରେ ବହୁତ ଭାରୀ କ୍ଷତି ହେଲା । ଏଣୁ ସେ ପତି-ପତ୍ନୀ ଦୁହେଁ ଓଡ଼କ୍ଷମରା ଔଷଧ ପିଇ ଦେଲେ ! କିନ୍ତୁ ଏତେ ପୁଣ୍ୟଶାଳୀ ଯେ ତା' ଭାଇ ହିଁ ଡକ୍ଟର ଥିଲା, ସେ ଆସିଲା ଏବଂ ବଞ୍ଚିଗଲା ! ପୁଣି ସେ ଗାଡ଼ି ନେଇ ଦୌଡ଼ି-ଦୌଡ଼ି ମୋ ପାଖକୁ ଆସିଲା । ମୁଁ ତା'କୁ କହିଲି 'ଏହି ଦାଦାଙ୍କ ନାମ ନେଉଥିବୁ ଏବଂ ଆଉ କେବେ ଏପରି କରିବୁ ନାହିଁ ।' ପରେ ସେ ଦାଦାଙ୍କ ନାମ ନେବାକୁ ଲାଗିଲା । ତା'ର ସବୁ ପାପ ଧୋଇଗଲା ଏବଂ ସବୁ ଠିକ ହୋଇଗଲା ।

'ଦାଦା' କହିଲେ ('ଦାଦା'ଙ୍କ ନାମ ନେଲେ) ସେହି ସମୟରେ ପାପ ପାଖକୁ ଆସନ୍ତି ହିଁ ନାହିଁ । ଚାରିପଟେ ବୁଲୁଥାନ୍ତି କିନ୍ତୁ ଛୁଅନ୍ତି ନାହିଁ ତୁମକୁ । ତୁମେ ଯଦି ଘୁମେଇବ, ତେବେ ସେତେବେଳେ ଛୁଇଁଯାନ୍ତି । ରାତି ନିଦରେ ଛୁଅନ୍ତି ନାହିଁ । ଯେପର୍ଯ୍ୟନ୍ତ ଚାହିଁଛ ସେପର୍ଯ୍ୟନ୍ତ ଯଦି କହୁଥିବ ଏବଂ ସକାଳେ ଉଠିବା ମାତ୍ରେ କହିବ, ତେବେ ମଝିର ସମୟ ସେହି ସ୍ୱରୂପ କୁହାଯିବ ।

ଧର୍ମର ପୁଣ୍ୟ ତ ଏପରି ଅଟେ ଯେ, ଧର୍ମ ପ୍ରତ୍ୟେକ ଜାଗାରେ ସାହାଯ୍ୟ କରେ । କିଭଳି ବି ଅସୁବିଧାରେ ସାହାଯ୍ୟ କରେ । ଧର୍ମର ପୁଣ୍ୟ ଏପରି ହୋଇଥାଏ । ପୁଣ୍ୟ ନିଶ୍ଚିତ ହେଲ୍ପ କରେ । ଆମ ଜ୍ଞାନ ତ ଅଲଗା ପ୍ରକାରର ଅଟେ । ପ୍ରତ୍ୟକ୍ଷ ହାଜର (ହାଜରାହଜୁର) ଜ୍ଞାନ ଅଟେ !

ପୁଣ୍ୟ ମଧ୍ୟ ଫାଇଲ୍ ଅଟେ ଏବଂ ପାପ ମଧ୍ୟ ଫାଇଲ୍ ଅଟେ । ପୁଣ୍ୟ ପ୍ରମାଦ କରାଏ ଏବଂ ପାପ ଜାଗ୍ରତ ରଖେ । ପୁଣ୍ୟ ତ ଓଲଟା ଏ ଆଇସ୍କ୍ରିମ୍ ଖାଅ, ଏ ଫ୍ରୁଟ୍ ଖାଅ, ଏପରି ସବୁ ପ୍ରମାଦ କରାଏ । ତାହା ବଦଳରେ ଏହି ପିତା ଔଷଧ ପିଆଇ ଦିଅ, ତେବେ ଜାଗ୍ରତ ତ ରହିବ !

## ଗ୍ରାହକ ପଠାଇବାବାଲା କିଏ ?

ଏ ସବୁ ଲୋକ ମୋଟେଲ୍(ରାସ୍ତା କଡ଼ିଆ ହୋଟେଲ) ଚଲାନ୍ତି, ସେଥିରେ ଆସିବାବାଲାଙ୍କୁ କିଏ ପଠାଉଥିବ ? ତୁମେ ମୋଟେଲ୍ ଚଲାଉଛ ନା, କିଏ ପଠାଉଥିବ ?

**ପ୍ରଶ୍ନକର୍ତ୍ତା :** ଜଣା ନାହିଁ ।

**ଦାଦାଶ୍ରୀ :** ତାହା ହିଁ ତୁମର ପୁଣ୍ୟ । ଭଗବାନ ପଠାନ୍ତି ନାହିଁ, ଅନ୍ୟ କେହି ପଠାଏ ନାହିଁ । ତୁମ ପୁଣ୍ୟ ପଠାଏ ଆଉ ପାପର ଉଦୟ ହେବ ତେବେ ସମସ୍ତଙ୍କ ମୋଟେଲ୍ ଭରି ହୋଇଥିବ କିନ୍ତୁ ତୁମର ଭରେ ନାହିଁ । କେତେ ବି ଭଲ କରି ଥାଅ, ତଥାପି ଭରେ ନାହିଁ ।

## କାହାକୁ ଦୋଷ ଦେବାପରି ଅଟେ ?

ଏପରି କୌଣସି ଜିନିଷ ନାହିଁ ଯେ ଯାହା ଏହି ପୁଣ୍ୟଶାଳୀମାନଙ୍କୁ ନ ମିଳିବ, ମାତ୍ର ସେପରି ପୁରା ପୁଣ୍ୟ ଆଣି ନାହାନ୍ତି, ସେଥିପାଇଁ । ନହେଲେ ପ୍ରତ୍ୟେକ ଜିନିଷ ଯେପରି ଦରକାର ସେପରି ମିଳିବ ଏପରି ଅଟେ । କିନ୍ତୁ ଲୋକେ ଲୌକିକ ଜ୍ଞାନରେ ପଡ଼ିଛନ୍ତି ଏବଂ ସେପର୍ଯ୍ୟନ୍ତ କେବେ ବି 'ବସ୍ତୁ'(ଆତ୍ମା) ପ୍ରାପ୍ତ ହୁଏ ନାହିଁ । ଏକରେ ତ ବୁଦ୍ଧି ସାମାନ୍ୟ ଉନ୍ନତ ଥାଏ, ସେଥିରେ ପୁଣି ତା'କୁ ଯଦି ଏପରି ଜ୍ଞାନ ମିଳେ ଯେ *'ବୁଧେ ନାର ପାଂସରୀ'* (ନାରୀ ତାଡ଼ନାର ଅଧିକାରୀ), ତେବେ ତ ତା'କୁ ଯାହା ଦରକାର ତାହା ମିଳିଗଲା ! ଏହି ଯେଉଁ ଜ୍ଞାନ ମିଳିଲା, ସେହି ଜ୍ଞାନ ତା'କୁ ଫଳ ଦେବ ନା ନାହିଁ ? ପୁଣି କ'ଣ ହେବ ? ଯେଉଁ ସ୍ତ୍ରୀ'ର ଗର୍ଭରୁ ତୀର୍ଥଙ୍କର ଜନ୍ମିଲେ ସେହି ସ୍ତ୍ରୀ'ର ଦଶା ତ ଦେଖ, ତୁମେ କିପରି କଲ ? କେତେ ଅନ୍ୟାୟ ଅଟେ ? କାହିଁକିନା ଯେଉଁ ସ୍ତ୍ରୀ'ର ଗର୍ଭରୁ ଚବିଶ ତୀର୍ଥଙ୍କର ଜନ୍ମିଲେ, ବାର ଚକ୍ରବର୍ତ୍ତୀ ଜନ୍ମିଲେ, ବାସୁଦେବ ଜନ୍ମିଲେ, ସେଠି ବି ଏପରି କଲ ? ପଛେ ତୁମକୁ କଷ୍ଟ ଅନୁଭବ ହୋଇଥାଉ । ସେଥିରେ ସ୍ତ୍ରୀ ଜାତିର କାହିଁକି ନିନ୍ଦା କରୁଛ ? ତୁମେ ବାର ଟଙ୍କା ଡର୍ଜନର ଦାମ୍‌ରେ ଆମ୍ବ ନେଇ ଆସ, କିନ୍ତୁ ଖଟା ବାହାରେ ଏବଂ ଅଲଗା ତିନିଟଙ୍କା ଡର୍ଜନ ଦାମ୍‌ବାଲା ବହୁତ ମିଠା ବାହାରେ । ଅର୍ଥାତ ଅନେକ ସମୟରେ ଜିନିଷ ଦାମ୍ ଉପରେ ଆଧାରିତ ହୋଇ ନଥାଏ, ତୁମ ପୁଣ୍ୟ ଉପରେ ଆଧାରିତ ହୋଇଥାଏ । ତୁମ ପୁଣ୍ୟ ଯଦି ଜୋର କରେ, ତେବେ ଆମ୍ବ ମିଠା ବାହାରେ, ଆଉ ଖଟ୍ଟା ବାହାରିଲା ସେଥିରେ ତୁମ ପୁଣ୍ୟର ଜୋର ନଥିଲା, ସେଥିରେ କାହାକୁ ଦୋଷ କିପରି ଦେବା ?

ଏଣୁ ଏହା ତ ପୁଣ୍ୟ କମଜୋର ପଡ଼ିଯାଏ, ନହେଲେ ଆଉ କ'ଣ ଏହା ? ବଡ଼ ଭାଇ ସମ୍ପତ୍ତି ଦେଉ ନଥିବ ତେବେ କ'ଣ ବଡ଼ ଭାଇର ଦୋଷ ? ଆମ ପୁଣ୍ୟ କମ ଅଛି । ସେଥିରେ ଦୋଷ କାହାର ନୁହେଁ । ଏ ତ ପୁଣ୍ୟକୁ ସୁଧାରେ ନାହିଁ ଏବଂ ବଡ଼ଭାଇ ସହ ନିରୋଳା ପାପ ବାନ୍ଧେ ! ପୁଣି ପାପର ମୁଣି ଭରେ ।

ଆମକୁ ଘରର ଅସୁବିଧା ଥିବ ଏବଂ କେହି ବ୍ୟକ୍ତି ସାହାଯ୍ୟ କରେ ଏବଂ ରହିବା ପାଇଁ ଘର ଦେଇ ଦିଏ, ତେବେ ଜଗତର ମନୁଷ୍ୟଙ୍କୁ ତା'ଉପରେ ରାଗ(ଅନୁରାଗ) ହୋଇଯାଏ ଆଉ ସେ ଯେତେବେଳେ ଘର ନେବାକୁ ଚାହେଁ ତେବେ ତା'ଉପରେ ଦ୍ୱେଷ ହୁଏ । ଏହା ରାଗ୍-ଦ୍ୱେଷ ଅଟେ, ଏବେ ବାସ୍ତବରେ ତ ରାଗ୍-ଦ୍ୱେଷ କରିବାର ଆବଶ୍ୟକତା ନାହିଁ, ସେ କେବଳ ନିମିତ୍ତ ଅଟେ । ସେ ଦେବାବାଲା ଏବଂ ନେଇଯିବାବାଲା, ଉଭୟ ନିମିତ୍ତ ଅଟନ୍ତି । ତୁମ ପୁଣ୍ୟର ଯେବେ ଉଦୟ ହୁଏ ସେତେବେଳେ ସେ ଦେବା ପାଇଁ ଆସେ, ପାପର ଉଦୟ ହୁଏ ସେତେବେଳେ ନେବା ପାଇଁ ଆସେ । ସେଥିରେ ତା'ର କୌଣସି ଦୋଷ ନାହିଁ । ତୁମ ଉଦୟ ଉପରେ ଆଧାରିତ ଅଟେ । ସାମନାବାଲାର କିଞ୍ଚିତମାତ୍ର ଦୋଷ ନାହିଁ । ସେ କେବଳ ନିମିତ୍ତ ଅଟେ । ଆମ ଜ୍ଞାନ ଏପରି କୁହେ, କେତେ ସୁନ୍ଦର କଥା !

ଅଜ୍ଞାନୀକୁ ତ ଯଦି କେହି ମିଠା-ମିଠା କୁହେ ସେଠାରେ ରାଗ୍ ହୁଏ ଏବଂ ଯଦି କଟୁ କୁହେ ସେଠି ଦ୍ୱେଷ ହୁଏ । ସାମନାବାଲା ମିଠା କୁହେ, ତାହା ନିଜର ପୁଣ୍ୟ ପ୍ରକାଶିତ ଅଟେ ଏବଂ ସାମନାବାଲା କଟୁ କୁହେ, ତାହା ନିଜର ପାପ ପ୍ରକାଶିତ ଅଟେ । ଏଣୁ ମୂଳ କଥାରେ, ଉଭୟ ପ୍ରସଙ୍ଗରେ ସାମ୍ନାବାଲାର କିଛି ନେବା-ଦେବା ନାହିଁ । କହିବାବାଲାକୁ କିଛି ନେବା-ଦେବା ନାହିଁ । ସାମନାବାଲା ମନୁଷ୍ୟ ତ କେବଳ ନିମିତ୍ତ ଅଟେ । ଯିଏ ଯଶର ନିମିତ୍ତ ହୋଇଥାଏ ତା'ଠାରୁ ସବୁବେଳେ ଯଶ ମିଳୁଥାଏ ଆଉ ଯଦି ଅପଯଶର ନିମିତ୍ତ ହୋଇଥାଏ ତା'ଠାରୁ ଅପଯଶ ମିଳୁଥାଏ । ସେ ତ କେବଳ ନିମିତ୍ତ ଅଟେ । ସେଥିରେ କାହାର ଦୋଷ ନାହିଁ ।

**ପ୍ରଶ୍ନକର୍ତ୍ତା :** ସମସ୍ତଙ୍କୁ ନିମିତ୍ତ ହିଁ କୁହାଯିବ ନା ?

**ଦାଦାଶ୍ରୀ :** ନିମିତ୍ତ ବ୍ୟତୀତ ଏହି ଦୁନିଆରେ ଅଲଗା କିଛି ଜିନିଷ ହିଁ ନାହିଁ । ଯାହା ଅଛି, ତାହା ଏହି ନିମିତ୍ତ ହିଁ ଅଛି ।

## ତାହାର ଆଧାର ହେଉଛି ପୁଣ୍ୟ ଏବଂ ପାପ

**ପ୍ରଶ୍ନକର୍ତ୍ତା :** ଅନେକ ମିଛ କହିଲେ ମଧ୍ୟ ତାହା ସତ୍ୟ ସାବ୍ୟସ୍ତ ହୋଇଯାଏ ଏବଂ ଅନେକ ସତ କୁହନ୍ତି ତେବେ ମଧ୍ୟ ମିଛ ସାବ୍ୟସ୍ତ ହୁଏ । ଏହି ପଜଲ୍ (ପ୍ରହେଳିକା) କ'ଣ ?

**ଦାଦାଶ୍ରୀ :** ତାହା ତାଙ୍କ ପାପ ଏବଂ ପୁଣ୍ୟର ଆଧାରରେ ହୁଏ । ତାଙ୍କ ପାପର ଉଦୟ ହୋଇଥିବ ତେବେ ସେ ସତ କହିଲେ ମଧ୍ୟ ମିଛ ସାବ୍ୟସ୍ତ ହୋଇଯାଏ । ଯେବେ ପୁଣ୍ୟର ଉଦୟ ହୁଏ ସେତେବେଳେ ମିଛ କହିଲେ ମଧ୍ୟ ଲୋକେ ତାହାକୁ ସତ ସ୍ୱୀକାର କରନ୍ତି, ପଛେ ଯେଭଳି ବି ଭୁଲ କରୁ ତଥାପି ଚଳିଯାଏ ।

**ପ୍ରଶ୍ନକର୍ତ୍ତା :** ତେବେ ତା'କୁ କୌଣସି କ୍ଷତି ହୁଏ ନାହିଁ ?

**ଦାଦାଶ୍ରୀ :** କ୍ଷତି ତ ଅଛି, କିନ୍ତୁ ଆସନ୍ତା ଜନ୍ମର । ଏହି ଜନ୍ମରେ ତ ତା'କୁ ପୂର୍ବଜନ୍ମର ଫଳ ମିଳିଲା । ଆଉ ଏହି ଯେଉଁ ମିଛ କହିଲା, ତାହାର ଫଳ ତା'କୁ ଆସନ୍ତା ଜନ୍ମରେ ମିଳିବ । ଏବେ ଏହା ସେ ବୀଜ ବୁଣିଲା । ନହେଲେ, ଏହା କେଉଁ ଅନ୍ଧାର ନଗରୀ ନୁହେଁ ଯେ ଯେଭଳି ହେଉ ଚଳିଯିବ !

## ସେ କପଲ୍ (ଦମ୍ପତି) ମଧ୍ୟରେ କିଏ ପୁଣ୍ୟଶାଳୀ ?

ଜଣେ ଭାଇ ମୋ ପାଖକୁ ଆସିଥିଲା । ସେ ମୋତେ କହିଲା, 'ଦାଦା, ମୁଁ ବାହା ତ ହୋଇଛି କିନ୍ତୁ ମୋତେ ମୋ ପତ୍ନୀ ପସନ୍ଦ ନୁହେଁ ।' ମୁଁ କହିଲି, 'କାହିଁକି ଭାଇ, ପସନ୍ଦ ନ ହେବାର କାରଣ କ'ଣ ?' ତେବେ ସେ କହିଲା, 'ସେ ଟିକିଏ ଛୋଟୀ ଅଟେ, ଗୋଡ଼ରେ ଛୋଟଉଛି ।' ପୁଣି ମୁଁ ପଚାରିଲି, 'ତେବେ ତୋ ପତ୍ନୀକୁ ତୁ ପସନ୍ଦ ଅଟୁ ନା ନାହିଁ ?' ତେବେ ସେ କୁହେ, 'ଦାଦା, ମୁଁ ତ ପସନ୍ଦ ଆସିବି ସେପରି ଅଟେ ନା! ସୁନ୍ଦର ଅଟେ, ଶିକ୍ଷିତ ଅଟେ, କୌଣସି ଶାରିରୀକ ତ୍ରୁଟି ନାହିଁ ମୋ ଠାରେ ।' ସେତେବେଳେ ମୁଁ କହିଲି, 'ତେବେ ସେଥିରେ ଭୁଲ ତୋର ହିଁ ଅଟେ । ତୁ ଏପରି କି ଭୁଲ କରିଥିଲୁ ଯେ ତୋତେ ଛୋଟୀ ମିଳିଲା ଆଉ ସେ କେତେ ଭଲ ପୁଣ୍ୟ କରିଥିଲା ଯେ ତୁ ଏତେ ଭଲ ତା'କୁ ମିଳିଲୁ ! ଆରେ, ଏହା ତ ନିଜର କରାଯାଇଥିବା କର୍ମ ହିଁ ନିଜ ସାମନାକୁ ଆସନ୍ତି । ସେଥିରେ ସାମନାବାଲାର ଦୋଷ କ'ଣ ଦେଖୁଛୁ ? ଯା, ତୋ ଭୁଲକୁ ଭୋଗି ନେ ଆଉ ପୁଣି ନୂଆ ଭୁଲ କରିବୁ ନାହିଁ ।'

## ଯନ୍ତ୍ରଣାରେ ପୁଣ୍ୟ-ପାପର ରୋଲ୍...

**ପ୍ରଶ୍ନକର୍ତ୍ତା :** ମନୁଷ୍ୟଙ୍କୁ ରୋଗ ହୁଏ, ତାହାର କାରଣ କ'ଣ ?

**ଦାଦାଶ୍ରୀ :** ସେ ନିଜେ ଦୋଷ କରିଛି ସବୁ, ପାପ କରିଛି, ତାହାଦ୍ୱାରା ଏହି ରୋଗ ହୁଏ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏହି ଛୋଟ-ଛୋଟ ପିଲାମାନେ କି ଦୋଷ କରିଥିଲେ ?

**ଦାଦାଶ୍ରୀ :** ସମସ୍ତେ ପାପ କରିଥିଲେ, ଏସବୁ ରୋଗ ହେଉଛି ତାହାର ପରିଣାମ । ପୂର୍ବଜନ୍ମରେ ଯେଉଁ ପାପ କରିଛନ୍ତି, ତାହାର ଫଳ ଆସିଲା ଏବେ । ଛୋଟ ପିଲାମାନେ ଦୁଃଖ ଭୋଗୁଛନ୍ତି, ସେ ସବୁ ପାପର ଫଳ ଆଉ ଶାନ୍ତି ଏବଂ ଆନନ୍ଦ ଭୋଗୁଛନ୍ତି ତାହା ପୁଣ୍ୟର ଫଳ । ପାପ ଏବଂ ପୁଣ୍ୟର ଫଳ, ଉଭୟ ମିଳେ । ପୁଣ୍ୟ, ତାହା କ୍ରେଡ଼ିଟ୍ ଅଟେ ଆଉ ପାପ ଡେବିଟ୍ ଅଟେ ।

**ପ୍ରଶ୍ନକର୍ତ୍ତା :** ଆମକୁ ଏବେ ଏହି ଜନ୍ମରେ କିଛି ଯନ୍ତ୍ରଣା ହୁଏ, ରୋଗ ହୋଇଯାଏ ତେବେ ତାହା ଆମର ପୂର୍ବଜନ୍ମର କର୍ମର ଫଳ ଅଟେ, ଯଦି ତାହା ବ୍ୟବସ୍ଥିତ ହିଁ ଅଟେ ତେବେ ପୁଣି ଆମେ ଏବେ ଯେ କୌଣସି ବି ଔଷଧ ଖାଉ, ତାହା ଆମକୁ କିପରି ସୁଧାରେ ?

**ଦାଦାଶ୍ରୀ :** ସେ ଔଷଧ ଖାଉଛ, ତାହା ମଧ୍ୟ ଯଦି ବ୍ୟବସ୍ଥିତ ହୋଇଥିବ ତେବେ ଖାଇ ହୁଏ, ନହେଲେ ଖାଇ ହୁଏ ହିଁ ନାହିଁ । ଆମକୁ ମିଳିବ ହିଁ ନାହିଁ ।

**ପ୍ରଶ୍ନକର୍ତ୍ତା :** ପୁଣି କେତେ ପ୍ରକାରର ଔଷଧ ଖାଏ, ତେବେ ମଧ୍ୟ ତା'ଙ୍କୁ ଔଷଧ କାମ କରେ ନାହିଁ, ଠିକ ହୁଏ ନାହିଁ । ଏପରି ବି ହୁଏ ନା, ଦାଦା ।

**ଦାଦାଶ୍ରୀ :** ଓଲଟା ପଇସା ଶେଷ ହୋଇଯାଏ ଏବଂ ମରିବାର ସମୟ ଆସିଯାଏ । ଯେବେ କି ଯଦି ପୁଣ୍ୟ ପ୍ରକାଶମାନ ହୁଏ ତେବେ ଏମିତି କଥା-କଥାରେ ଅଳ୍ପ ଟମାଟୋ ରସ ପିଇଲେ ମଧ୍ୟ ରୋଗ ଭଲ ହୋଇଯାଏ । ଏଣୁ ପୁଣ୍ୟ ଉପରେ ଆଧାରିତ ଅଟେ । ତୁମ ପୁଣ୍ୟ ଯଦି ଫଳ ଦେବାପାଇଁ ପ୍ରସ୍ତୁତ ହୋଇଯାଏ ତେବେ ସବୁ ଏହିପରି ଫ୍ରି ଅଫ୍ କଷ୍ଟ୍ ମିଳିଯାଏ ଆଉ ପାପ ଯଦି ଫଳ ଦେବାପାଇଁ ପ୍ରସ୍ତୁତ ହୋଇଯାଏ ତେବେ ଭଲ ଜିନିଷ ହୋଇଥିବ, ତାହା ମଧ୍ୟ ଓଲଟା ପଡ଼ିଯାଏ ।

ରୋଗରେ ପୁଣ୍ୟଦ୍ୱାରା ଭୋଗିବା କମ୍ ହୋଇଯାଏ । ରୋଗରେ ପାପଦ୍ୱାରା

ଭୋଗିବା ବଢ଼ିଯାଏ । ପୁଣ୍ୟ ନଥିବ ତେବେ ପୁରା ହିଁ ଭୋଗିବାକୁ ପଡ଼େ ।

ପୁଣ୍ୟ ଥିବ ତେବେ ଭଲ ବୈଦରାଜ ମିଳିଯାଏ । ସମୟ ମିଳିଯାଏ । ସବୁ ମିଳିଯାଏ ଏବଂ ଶାନ୍ତି ରହେ । ଯନ୍ତ୍ରଣା କ'ଣ ଡକ୍ଟର ଦୂର କଲା ? ପୁଣ୍ୟ ଦୂର କଲା ଏବଂ ପାପରୁ ସୃଷ୍ଟି ହୋଇଥିଲା । ତେବେ ଆଉ କିଏ ଦୂର କରିବ? ଡକ୍ଟର ନିମିତ୍ତ ଅଟେ !

**ପ୍ରଶ୍ନକର୍ତ୍ତା :** ରୋଗ ହେବା ତାହା ପାପର ଉଦୟ କୁହାଯିବ ?

**ଦାଦାଶ୍ରୀ :** ତେବେ ଆଉ କ'ଣ ତାହା ? ଏହି ରୋଗ ତ ପାପ ଅଟେ ଆଉ ନିରୋଗତା ତାହା ପୁଣ୍ୟ ଅଟେ ।

## ଆୟୁଷ ଲମ୍ବା ଭଲ ନା ଛୋଟ ?

**ପ୍ରଶ୍ନକର୍ତ୍ତା :** ବହୁତ ଲମ୍ବା ଜୀବନକାଳ, ବହୁତ ଲମ୍ବା ଆୟୁଷ ତାହା ପୁଣ୍ୟର ଫଳ ଅଟେ ନା ପାପର ଫଳ ?

**ଦାଦାଶ୍ରୀ :** ହଁ, ଲୋକଙ୍କୁ ଗାଳି ଶୁଣାଇବା ଏବଂ ଲୋକଙ୍କ ନିନ୍ଦା କରିବା ପାଇଁ ଯଦି ଜୀବନ ହୋଇଥିବ ତେବେ ପାପର ଫଳ ଅଟେ ! ନିଜ ଆତ୍ମାର ମଙ୍ଗଳ ପାଇଁ ଅଥବା ଅନ୍ୟମାନଙ୍କ ମଙ୍ଗଳ ପାଇଁ ଯଦି କେହି ଅଧିକ ବଞ୍ଚୁଛି, ତେବେ ତାହା ପୁଣ୍ୟର ଫଳ ଅଟେ ।

ପୁଣ୍ୟଶାଳୀର ଆୟୁଷ ଲମ୍ବା ହୋଇଥାଏ, କିଛି କମ ପୁଣ୍ୟ ଥିବ ତେବେ ଆୟୁଷ କଟିଯାଏ, ମଝି ରାସ୍ତାରେ ! ଏବେ କେହି ମଣିଷ ବହୁତ ପାପୀ ହେଇଥିବ, ଏବଂ ଆୟୁଷ ଲମ୍ବା ହୋଇଥିବ ତେବେ ? ତାହାକୁ ଭଗବାନ କ'ଣ କହିଛନ୍ତି ଯେ ପାପୀର ଆୟୁଷ କିପରି ହେବା ଉଚିତ ? ଆମେ ଯଦି ଭଗବାନଙ୍କୁ ପଚାରିବା ଯେ, 'ପାପୀର ଆୟୁଷ କେତେ ହେଲେ ଭଲ କୁହାଯିବ ?' ତେବେ କୁହନ୍ତି ଯେ, 'ଯେତେ କମ ବଞ୍ଚିବ ସେତେ ଭଲ ।' କାହିଁକିନା ଏପରି ପାପର ସଂଯୋଗରେ ଅଛି, ଏଣୁ ଯଦି କମ ବଞ୍ଚିବ ତେବେ ତା'ର ସେ ସଂଯୋଗ ବଦଳିବ ! କିନ୍ତୁ ସେ କମ ବଞ୍ଚେ ନାହିଁ ନା ! ଏହା ତ ଲେବଲ୍ ବତାଇବା ପାଇଁ ଆମକୁ କୁହନ୍ତି, କିନ୍ତୁ ଅଧିକ ବଞ୍ଚେ, ସେ ଶହେ ବର୍ଷ ବି ପୂରା କରେ ଏବଂ ଏତେ ସାରା ପାପର ମୁଣି ଭରେ ଯେ କେତେ ତଳକୁ ଯିବ ତାହା ତ ସେ ହିଁ ଜାଣେ ! ଆଉ ପୁଣ୍ୟଶାଳୀ ବ୍ୟକ୍ତି ଅଧିକ ବଞ୍ଚେ ତାହା ବହୁତ ଭଲ ।

## ପରଜନ୍ମର ଗଣ୍ଡିଲି କାହାର ?

ପରଦେଶର କମାଇ ପରଦେଶରେ ହିଁ ରହିବ । ଏହି ଗାଡ଼ି-ବଙ୍ଗଳା, ମିଲ୍, ସ୍ତ୍ରୀ-ଛୁଆପିଲା ସବୁ ଏହିଠାରେ ରଖି ଯିବାକୁ ପଡ଼ିବ । ଏହି ଶେଷ ଷ୍ଟେସନ୍‌ରେ ତ କାହା ବାପାର ବି ଚାଲିବ ସେପରି ନୁହେଁ! କେବଳ ପୁଣ୍ୟ ଏବଂ ପାପ ସାଥିରେ ନେବାକୁ ଦେବେ । ଅଲଗା ସରଳ ଭାଷାରେ ତୋତେ ବୁଝାଇବି ତେବେ ଏଠି ଯେଉଁ-ଯେଉଁ ଦୋଷ କଲେ ତାହାର ଦଫା ସାଥିରେ ଆସିବ । ସେହି ଦୋଷର କମାଇ ଏହିଠାରେ ରହିଯିବ ଏବଂ ପୁଣି କେସ୍ ଚାଲିବ । ଦଫା ହିସାବରେ ନୂଆ ଦେହ ପ୍ରାପ୍ତ କରି ପୁଣିଥରେ ନୂଆ ରୂପେ କମାଇ ଉଧାର ସୁଝିବାକୁ ପଡ଼ିବ । ଏଣୁ ଭାଇ, ପ୍ରଥମରୁ ହିଁ ସିଧା ହୋଇ ଯା ନା! 'ସ୍ୱଦେଶ'ରେ ତ ବହୁତ ସୁଖ ଅଛି । କିନ୍ତୁ ସ୍ୱଦେଶ ଦେଖି ହିଁ ନାହିଁ ନା !

**ପ୍ରଶ୍ନକର୍ତ୍ତା :** ମନୁଷ୍ୟ ଜନ୍ମରେ ସତ୍‌କାର୍ଯ୍ୟ କରିବା ପରେ, ତା'ର ଦେହବିଲୟ ପଶ୍ଚାତ, ସେହି ଆତ୍ମାର ପରିସ୍ଥିତି କିପରି ହୋଇଥାଏ ?

**ଦାଦାଶ୍ରୀ :** ସତ୍‌କାର୍ଯ୍ୟ କରେ ତେବେ ପୁଣ୍ୟବନ୍ଧନ ହୁଏ । ତାହା କ୍ରେଡ଼ିଟ୍ ହୁଏ, ତେବେ ମନୁଷ୍ୟରେ ଭଲ ଘରେ ଜନ୍ମ ମିଳେ । ରାଜା ହୁଏ ଅଥବା ପ୍ରଧାନମନ୍ତ୍ରୀ ହୁଏ ଅଥବା ତାହାଠାରୁ ବି ଅଧିକ ସତ୍‌କାର୍ଯ୍ୟ ଯଦି କରିଥିବ ତେବେ ଦେବଗତିରେ ଯାଏ । ସତ୍‌କାର୍ଯ୍ୟ କରେ ତାହା କ୍ରେଡ଼ିଟ୍ କୁହାଯାଏ, ସେ ପୁଣି କ୍ରେଡ଼ିଟ୍ ଭୋଗିବା ପାଇଁ ଯାଏ । ଆଉ ଯଦି ଖରାପ କାର୍ଯ୍ୟ କରିଥିବ, ସେ ଡେବିଟ୍ ଭୋଗିବା ପାଇଁ ଯାଏ ପୁଣି, ଦୁଇ ଗୋଡ଼ରୁ ଚାରିଗୋଡ଼ ହୋଇଯାଏ ! ଏହା ତୁମେ ଏସ୍.ଇ. ହୋଇଛ ତାହା କ୍ରେଡ଼ିଟ୍ ଯୋଗୁଁ । ଆଉ ଡେବିଟ୍ ଥାଏ ତେବେ ମିଲ୍‌ରେ ଚାକିରୀ କରିବାକୁ ପଡ଼େ । ଦିନସାରା ପରିଶ୍ରମ କରେ ତେବେ ମଧ୍ୟ ପୂରା ହୁଏ ହିଁ ନାହିଁ । ଏଣୁ ଏହି କ୍ରେଡ଼ିଟ୍-ଡେବିଟ୍‌ର ଆଧାରରେ ଏହି ଚାରି ଗତି ଆଉ କ୍ରେଡ଼ିଟ୍-ଡେବିଟ୍ ଉତ୍ପନ୍ନ ନ ହେଲା ତେବେ ମୋକ୍ଷଗତିରେ ଯାଏ ।

ସ୍ୱାର୍ଥ କରିବା ଦ୍ୱାରା ପାପକର୍ମର ବନ୍ଧନ ହୁଏ ଏବଂ ନିଃସ୍ୱାର୍ଥ କରିବା ଦ୍ୱାରା ପୁଣ୍ୟକର୍ମର ବନ୍ଧନ ହୁଏ । କିନ୍ତୁ ଉଭୟ କର୍ମ ହିଁ ଅଟେ ନା ? ପୁଣ୍ୟକର୍ମର ଫଳ ତାହା ସୁନାର ଜଞ୍ଜିର ଅଟେ ଏବଂ ପାପ କର୍ମର ଫଳ ଲୁହାର ଜଞ୍ଜିର ଅଟେ । କିନ୍ତୁ ଉଭୟ ଜଞ୍ଜିର ହିଁ ଅଟେ ନା ?

## ତଫାତ, ସ୍ୱର୍ଗ ଏବଂ ମୋକ୍ଷ ମଧ୍ୟରେ...

**ପ୍ରଶ୍ନକର୍ତ୍ତା :** ସ୍ୱର୍ଗ ଏବଂ ମୋକ୍ଷ ମଧ୍ୟରେ କ'ଣ ତଫାତ ?

**ଦାଦାଶ୍ରୀ :** ସ୍ୱର୍ଗ ତ ଏଠାରୁ ଯେଉଁମାନେ ପୁଣ୍ୟ କରି ଯାଆନ୍ତି ନା, ପୁଣ୍ୟ ଅର୍ଥାତ ଭଲ କାମ କରନ୍ତି, ଶୁଭ କାମ କରନ୍ତି, ମାନେ ଲୋକଙ୍କୁ ଦାନ ଦିଅନ୍ତି, କାହାରିକୁ ଦୁଃଖ ଦିଅନ୍ତି ନାହିଁ, କାହାକୁ ସାହାଯ୍ୟ କରନ୍ତି, ଓବ୍‌ଲାଇଜିଙ୍ଗ୍ ନେଚର ରଖନ୍ତି, କ'ଣ ଲୋକେ ଏପରି କର୍ମ କରୁନାହାନ୍ତି ?

**ପ୍ରଶ୍ନକର୍ତ୍ତା :** କରୁଛନ୍ତି ।

**ଦାଦାଶ୍ରୀ :** ଅର୍ଥାତ ଭଲ କାମ କରେ ତେବେ ସ୍ୱର୍ଗରେ ଯାଏ ଆଉ ଖରାପ କାମ କରେ ତେବେ ନର୍କରେ ଯାଏ । ଆଉ ଭଲ-ଖରାପ କାମ ମିକ୍ସଚର କରେ କିନ୍ତୁ ସେଥିରେ ଖରାପ କାମ କମ କରେ, ସେ ମନୁଷ୍ୟରେ ଆସେ । ଏହିପରି ଚାରି ଭାଗରେ କାମ କରିବାର ଫଳ ମିଳୁଥାଏ । ଆଉ କାମ କରିବାବାଲା କେହି ବି ମୋକ୍ଷରେ ଯାଇ ପାରିବେ ନାହିଁ । ମୋକ୍ଷ ପାଇଁ ତ କର୍ତ୍ତାଭାବ ନରହିବା ଉଚିତ । ଆତ୍ମଜ୍ଞାନ ମିଳେ ତେବେ କର୍ତ୍ତାଭାବ ଯାଏ ଏବଂ କର୍ତ୍ତାଭାବ ଯାଏ ତେବେ ମୋକ୍ଷ ହୋଇଯାଏ ।

## ପୁଣ୍ୟର ଫଳ କିପରି ?

ପୁଣ୍ୟ ଅର୍ଥାତ ଜମା ରାଶି ଏବଂ ପାପ ଅର୍ଥାତ ଉଧାର ରାଶି । ଜମା ରାଶି ଯେଉଁଠି ଖର୍ଚ୍ଚ କରିବାର ଥିବ ସେଠି ଖର୍ଚ୍ଚ କରାଯାଇ ପାରିବ । ଦେବୀ-ଦେବତାଙ୍କୁ ନଜର ବନ୍ଦୀ ଥାଏ କିନ୍ତୁ ସେମାନଙ୍କୁ ମଧ୍ୟ ମୋକ୍ଷ ତ ମିଳେ ନାହିଁ । ତୁମ ଘରେ ଯଦି ବିବାହ ଥିବ ତେବେ ତୁମେ ସବୁକିଛି ଭୁଲି ଯାଅ, ସମ୍ପୂର୍ଣ୍ଣ ମୋହରେ ତନ୍ମୟ ଥାଅ । ଆଇସ୍କ୍ରିମ୍ ଖାଅ ତେବେ ଜିଭ ଖାଇବାରେ ଥାଏ, ବ୍ୟାଣ୍ଡ୍-ବାଜା ବାଜେ ତେବେ କାନକୁ ପ୍ରିୟ ଲାଗେ । ଆଖି ବରରାଜାକୁ ଦେଖୁଥାଏ, ନାକ ଅଗରବତୀ ଏବଂ ସେଣ୍ଟରେ ଯାଏ । ପାଞ୍ଚୋଟି ଯାକ ଇନ୍ଦ୍ରିୟ କାମରେ ଲାଗିଯାନ୍ତି । ମନ ଝଂଝଟ୍‌ରେ ଥାଏ । ଏସବୁ ଥିବ, ସେଠି ଆତ୍ମା ମନେ ପଡ଼େ ନାହିଁ । ସେହିପରି ଦେବୀ-ଦେବତାଙ୍କୁ ସବୁବେଳେ ଏହିପରି ହିଁ ଥାଏ । ଏହାଠାରୁ ଅନେକ ଗୁଣା ବିଶେଷ ସୁଖ ଥାଏ ସେଥିପାଇଁ ସେମାନେ *ଭାନ୍* ରେ ନଥାନ୍ତି । ସେମାନଙ୍କୁ ଆତ୍ମାର ଖିଆଲ ହିଁ ଆସେ ନାହିଁ । କିନ୍ତୁ ଦେବଗତିରେ

ମଧ୍ୟ *କଢ଼ପା-ଅଜମ୍ପା* ଏବଂ ଇର୍ଷା ହୁଏ । ପୁଣି ଦେବୀ-ଦେବତା ମଧ୍ୟ ନିରୋଳା ସୁଖରୁ ବିରକ୍ତ ହୋଇଯାନ୍ତି । ତାହା କିପରି ? ଚାରି ଦିନ ବାହାଘରରେ ସବୁଦିନ ଲଡ୍ଡୁ ଖାଇଥିବ ତେବେ ପଞ୍ଚମ ଦିନ ଖିଚିଡ଼ି ମନେ ପଡ଼େ ସେପରି ଅଟେ ! ସେମାନେ ମଧ୍ୟ ଇଚ୍ଛା କରନ୍ତି ଯେ କେବେ ମନୁଷ୍ୟ ଦେହ ମିଳିବ ଏବଂ ଭରତକ୍ଷେତ୍ରରେ ଭଲ ସଂସ୍କାରୀ ପରିବାରରେ ଜନ୍ମ ହେବ ଏବଂ ଜ୍ଞାନୀପରୁଷଙ୍କ ସହ ଭେଟ ହୋଇଯିବ । ଯେବେ ଜ୍ଞାନୀପୁରୁଷ ମିଳନ୍ତି ତେବେଯାଇ ବାଟ ଫିଟେ ଏପରି ଅଟେ । ନହେଲେ ଭଟକିବା ପାଇଁ ଚତୁର୍ଗତି ତ ଅଛି ।

## ପାପର ଫଳ କିପରି ?

ଆତ୍ମା ଉପରେ ଏପରି ପରଦା ଅଛି, ଆବରଣ ଅଛି ଯେ ଜଣେ ବ୍ୟକ୍ତିକୁ ଯଦି ଅନ୍ଧାର କୋଠରୀରେ ପୁରାଇ ରଖିବା ଏବଂ ତା'କୁ କେବଳ ଦୁଇ ଓଳି ଖାଇବାକୁ ଦେବା ତେବେ ଯେଉଁ ଦୁଃଖର ଅନୁଭବ ହୁଏ, ସେହିପରି ଅପାର ଦୁଃଖର ଅନୁଭବ ଏହି ଗଛ-ଲତା ଆଦି ଏକେନ୍ଦ୍ରିୟରୁ ନେଇ ପଞ୍ଚେନ୍ଦ୍ରିଅ ପର୍ଯ୍ୟନ୍ତ ଜୀବଙ୍କୁ ହୁଏ । ଏହି ପାଞ୍ଚ ଇନ୍ଦ୍ରିୟବାଲା ମନୁଷ୍ୟଙ୍କୁ ଏତେ ଦୁଃଖ ଅଛି, ତେବେ ଯାହାଙ୍କୁ କମ ଇନ୍ଦ୍ରିୟ ଅଛି ସେମାନଙ୍କୁ କେତେ ଦୁଃଖ ଥିବ ? ପାଞ୍ଚରୁ ଅଧିକ ଛଅ ଇନ୍ଦ୍ରିୟବାଲା କେହି ନାହିଁ । ଏହି ଗଛ-ଲତା ଏବଂ ପଶୁପକ୍ଷୀ ତାହା ତିର୍ଯଞ୍ଚ ଗତି ଅଟେ । ତେବେ ସେମାନଙ୍କୁ କଠୋର ବନ୍ଦୀର ଦଣ୍ଡ ମିଳିଛି । ଏହି ମନୁଷ୍ୟଗତି, ତାହା ସରଳ ବନ୍ଦୀବାଲା ଏବଂ ନର୍କଗତିରେ ତ ଭୟଙ୍କର ଦୁଃଖ ଅଛି, ତାହାର ଯେମିତିକୁ ସେମିତି ବର୍ଣ୍ଣନା ଯଦି କରିବି ତେବେ ଶୁଣିବା ମାତ୍ରେ ମନୁଷ୍ୟ ମରିଯିବ । ଚାଉଳ ସିଝାଯାଏ ଏବଂ (ଭାତ ଫୁଟିକି) ଉଛୁଳେ ତାହାଠୁ ଲକ୍ଷେ ଗୁଣା ଅଧିକ ଦୁଃଖ ହୁଏ । ଗୋଟିଏ ଜନ୍ମରେ ପାଞ୍ଚ-ପାଞ୍ଚ ଥର ମରଣର ବେଦନା ହୁଏ କିନ୍ତୁ ତଥାପି ମୃତ୍ୟୁ ହୁଏ ନାହିଁ । ସେଠି ଦେହ ପାରଦ ପରି ହୋଇଥାଏ । କାହିଁକିନା ସେମାନଙ୍କୁ ଦୁଃଖର ବେଦନ କରିବାକୁ ଥାଏ, ସେଥିପାଇଁ ମୃତ୍ୟୁ ହୁଏ ନାହିଁ । ତାଙ୍କର ପ୍ରତ୍ୟେକ ଅଙ୍ଗ କଟିଯାଏ ଏବଂ ପୁଣି ଯୋଡ଼ି ହୋଇଯାଏ । ବେଦନା ଭୋଗିବାକୁ ହିଁ ପଡ଼େ । ନର୍କଗତି ଅର୍ଥାତ ଆଜୀବନ କାରାଦଣ୍ଡ ।

## ପୁଣ୍ୟ-ପାପର ଗଳନ ସମୟରେ...

ପାପର ପୂରଣ(ଚାର୍ଜ) କରନ୍ତି ନା, ତାହାର ଯେତେବେଳେ ଗଳନ(ଡିସ୍‌ଚାର୍ଜ) ହେବ ସେତେବେଳେ ଜଣା ପଡ଼ିବ ! ସେତେବେଳେ ତୋ ତେଲ ବାହାରି ଯିବ । ନିଆଁ

ଉପରେ ବସିଛି, ସେପରି ଲାଗିବ !! ଯଦି ପୁଣ୍ୟର ପୂରଣ କରିବୁ ତେବେ ଜଣା ପଡ଼ିବ ଯେ କିଭଳି ଅଲଗା ପ୍ରକାରର ସୁଖ ଆସେ । ଏଣୁ ଯାହା-ଯାହା ପୂରଣ କରିବ ତାହା ଦେଖି-ଚାହିଁ କରିବ ଯେ ଏହା ଗଳନ ହେବା ସମୟରେ ପରିଣାମ କିପରି ଆସେ ! ପୂରଣ କରିବା ସମୟରେ ସତତ ଖିଆଲ ରଖିବ ଯେ, ପାପ କରି କାହାକୁ ଧୋକା ଦେଇ ପଇସା ଏକାଠି କରିବା ସମୟରେ ସର୍ବଦା ମନେ ରଖିବ ଯେ ତାହା ମଧ୍ୟ ଗଳନ ହେବ । ଯଦି ସେହି ପଇସା ବ୍ୟାଙ୍କରେ ରଖିବ ତେବେ ତାହା ମଧ୍ୟ ଯିବ ତ ନିଶ୍ଚିତ । ତାହାର ମଧ୍ୟ ଗଳନ ତ ହେବ । ଆଉ ସେ ପଇସା ଏକାଠି କରିବା ସମୟରେ ଯେଉଁ ପାପ କଲ, ଯେଉଁ ରୌଦ୍ରଧ୍ୟାନ କଲ, ଉପରୁ ତାହାର ଦଫାସବୁ ସାଥିରେ ଆସିବ ଏବଂ ଯେବେ ତାହାର ଗଳନ ହେବ ସେତେବେଳେ ତୋର କି ଦଶା ହେବ ?

## ପୁଣ୍ୟ ସରିଗଲେ ସେ ଅଲଗା କରିଦିଏ ଜ୍ଞାନୀଙ୍କ ଠାରୁ...

ପୁଣ୍ୟର ସ୍ୱଭାବ କିପରି ? ଖର୍ଚ୍ଚ ହୋଇଯାଏ । କୋଟି ମହଣ ବରଫ ହୋଇଥାଉ ମାତ୍ର ତାହାର ସ୍ୱଭାବ କିପରି ହୋଇଥାଏ ? ତରଳି ଯିବ, ସେପରି ।

ତୋର ମୋ ସହିତ ସଂଯୋଗ ପୁଣ୍ୟ ଆଧାରରେ ହୋଇଛି । ତୋ ପୁଣ୍ୟ ଯଦି ଶେଷ ହୋଇଯିବ ସେଥିରେ ମୁଁ କ'ଣ କରିବି ? ଆଉ ଯଦି ତୁ ମାନି ବସିବୁ ଯେ ଏହି ସଂଯୋଗ ହିଁ ମୋତେ ଦରକାର, ତେବେ କ'ଣ ହେବ ? ମାଡ଼ ଖାଇଯିବୁ । ମୁଣ୍ଡ ବି ଫାଟିଯିବ । ଯେତିକି ମିଳିଲା ସେତିକି ଲାଭ । ତାହାର ଆନନ୍ଦରେ ରହିବୁ ଯେ ମୋ ପୁଣ୍ୟ ଜାଗ୍ରତ ହୋଇଛି । ତୁ କ'ଣ ଏପରି ମାନୁଛୁ ଯେ ଏହି ଇଚ୍ଛାପୂର୍ବକ ସଂଯୋଗ ମିଳିଯାଉ ?

**ପ୍ରଶ୍ନକର୍ତ୍ତା :** ଏପରି ନୁହେଁ ।

**ଦାଦାଶ୍ରୀ :** ତେବେ ? ଏହା ନିୟମପୂର୍ବକ ହିଁ ଅଟେ ନା ? ନା ନିୟମରୁ ବାହାରେ ହୋଇଥିବ ?

**ପ୍ରଶ୍ନକର୍ତ୍ତା :** ନିୟମପୂର୍ବକ ହିଁ ଅଟେ ।

**ଦାଦାଶ୍ରୀ :** ତା'ପରେ ଯଦି ମାନି ବସିବୁ ତେବେ କ'ଣ ହେବ ? ତାହା ତ ଯଦି କେବେ ପୁଣ୍ୟ ଜାଗ୍ରତ ହୁଏ ତେବେ ମୋ ସହ ଭେଟ ହୋଇଯାଏ । ପୁଣି ଅଲଗା ହୋଇଯାଏ ତେବେ ଜଣା ପଡ଼ିଯାଏ । ଏଣୁ ଅଲଗା ହୋଇଥିବା ସ୍ଥିତିରେ ଯଦି ଅନୁଭବ

କରିଥିବ ତେବେ ପୁଣି ଅସୁବିଧା ନାହିଁ ନା ଆମକୁ ? ପଳାୟନ ବୃତ୍ତିରୁ କ'ଣ କର୍ମରୁ ବଞ୍ଚି ହେବ ? ମୁଁ ବଡ଼ୋଦରାରେ ଥିବି, ତୁ ବଡ଼ୋଦରାରେ ଥିବୁ, ତେବେ ମଧ୍ୟ କର୍ମ ଭେଟିବାକୁ ଦେବ ନାହିଁ ! ଏହି ଜ୍ଞାନ ଦେଇଛି, ଯେଉଁ ସମୟରେ ଯାହା ଆସିଲା ତାହା 'ବ୍ୟବସ୍ଥିତ' ଏବଂ ତାହାର ସମଭାବରେ *ନିକାଲ୍* କର । ବାସ୍ ଏତିକି ହିଁ କଥା ।

ପୁଣ୍ୟ ଥିବ ସେପର୍ଯ୍ୟନ୍ତ ଦାଦାଙ୍କ ପାଖରେ ବସିବାର ସମୟ ମିଳିଯାଏ, ସେହି ପୁଣ୍ୟର ଉପକାର ମାନିବା ଉଚିତ । ଏହା ସର୍ବଦା ପାଇଁ ହେଉଥିବ କେଉଁଠି ? ଏପରି ଆଶା ବି କିପରି ରଖି ପାରିବା ?

## କୁସଙ୍ଗରୁ ପାପର ପ୍ରବେଶ

ଏହି ଦୁନିଆରେ ସବୁଠାରୁ ବଡ଼ ପୁଣ୍ୟଶାଳୀ କିଏ ? ଯାହାକୁ କୁସଙ୍ଗ ଛୁଏଁ ନାହିଁ । ଯାହାକୁ ପାପ କରିବା ସମୟରେ ଡର ଲାଗେ, ତାହା ବଡ଼ ଜ୍ଞାନ କୁହାଯାଏ !

କୁସଙ୍ଗରୁ ପାପର ପ୍ରବେଶ ହୁଏ ଏବଂ ପରେ ପାପ ହିଁ କାମୁଡ଼େ । ତା'କୁ ଅବକାଶ ମିଳିବା ମାତ୍ରେ କେହି କୁସଙ୍ଗ ମିଳିଯାଏ, ପୁଣି କୁସଙ୍ଗ ଦ୍ୱାରା ନିନ୍ଦା କରିବା ବଢ଼ିଯାଏ ଆଉ ନିନ୍ଦା କଲେ ଦାଗ ପଡ଼ିଯାଏ । ଏ ସବୁ ଯେଉଁ ଦୁଃଖ ଅଛି, ଏହା ତାହାର ହିଁ ଦୁଃଖ । ଆମକୁ କାହା ବିଷୟରେ ବି କହିବାର କି ଅଧିକାର ଅଛି ? ଆମକୁ ନିଜର ଦେଖିବାର ଅଛି । କେହି ଦୁଃଖୀ ହୋଇଥାଉ ଅଥବା ସୁଖୀ, କିନ୍ତୁ ଆମକୁ ତା'ସହ କ'ଣ ନେବା-ଦେବା ? ଏମାନେ ତ ରାଜା ହୋଇଥିବ ତେବେ ମଧ୍ୟ ତା'ର ନିନ୍ଦା କରନ୍ତି । ନିଜକୁ କିଛି ବି ନେବା-ଦେବା ନାହିଁ ଏପରି ପର କଥା ! ଉପରୁ ପୁଣି ଦ୍ୱେଷ ଏବଂ ଇର୍ଷା ଏବଂ ତାହାର ହିଁ ଦୁଃଖ ଅଟେ ଏସବୁ । ଭଗବାନ କ'ଣ କହନ୍ତି ଯେ ବୀତରାଗ ହୋଇ ଯା । ତୁ ବୀତରାଗ ହିଁ ଅଟୁ, ଏହି ରାଗ୍-ଦ୍ୱେଷ କ'ଣ ପାଇଁ? ତୁ ନାମରେ ପଡ଼ିବୁ ତେବେ ରାଗ୍-ଦ୍ୱେଷ ହେବ ନା ? ଆଉ ଅନାମୀ ହୋଇଯିବୁ ତେବେ ବୀତରାଗ ହୋଇଗଲୁ !

## ସଦୁପଯୋଗ, କେବଳ ଆତ୍ମାର୍ଥେ...

ଏପରି ଅଟେ, ଏହି ପୁଣ୍ୟ ଜାଗ୍ରତ ହୋଇଛି ଏଣୁ ଖାଇବା-ପିଇବା ସବୁ ଘରେ ବସି ବସି ମିଳୁଛି ସେଥିପାଇଁ ଏସବୁ ଟି.ଭି. ଦେଖିବା ଅଛି, ନହେଲେ ଖାଇବା-ପିଇବାର ଠିକଣା ଯଦି ନଥାନ୍ତା ତେବେ ଦିନ ସାରା ପରିଶ୍ରମ କରିବାକୁ ଯିବେ ନା

ଟି.ଭି. ଦେଖିବେ ? ଅର୍ଥାତ ଏମାନେ ପୁଣ୍ୟର ଦୁରୂପଯୋଗ କରୁଛନ୍ତି । ଏହି ପୁଣ୍ୟର ସଦୁପଯୋଗ ତ ଏପରି କରିବା ଉଚିତ ଯେ ଏହି ଟାଇମ୍ ଅଛି ତାହା ଆତ୍ମା ପାଇଁ ହିଁ ଯିବା ଉଚିତ । ତଥାପି ଟି.ଭି. ଦେଖିବ ହିଁ ନାହିଁ ସେପରି ଆଗ୍ରହ ନାହିଁ, ଅଳ୍ପ ସମୟ ଦେଖ ସତ, କିନ୍ତୁ ବିଚାର କରି ସେଥିରୁ ରୁଚି ବାହାର କରିଦେବା ଉଚିତ ଯେ ଏହା ଠିକ ନୁହେଁ ।

## ପରୋପକାରରୁ ପୁଣ୍ୟବନ୍ଧନ

**ପ୍ରଶ୍ନକର୍ତ୍ତା :** ପୁଣ୍ୟର ବନ୍ଧନ କିପରି ହେବ ?

**ଦାଦାଶ୍ରୀ :** ଯିଏ ଆସେ ତା'କୁ 'ଆସ ଭାଇ, ବସ ।' ଏପରି ଆସନ୍ତୁ-ବସନ୍ତୁ କରିବା । ଆମ ପାଖରେ ଯଦି ଚା' ଥିବ ତେବେ ଚା' ଆଉ ଯଦି ନଥିବ ତେବେ ଯାହା ଥିବ ତାହା, ଅଧା ପରଟା ଥିବ ତେବେ ତାହା ଦେବା । ପଚାରିବା ଯେ, 'ଭାଇ, ଅଳ୍ପ ପରଟା ନେବ ?' ଏହିପରି ପ୍ରେମର ସହ ବ୍ୟବହାର କରିବା ତେବେ ପୁଣ୍ୟ ଏକତ୍ର ହୁଏ । ପର ପାଇଁ କରିବା, ତାହାର ନାମ ପୁଣ୍ୟ । ଘର ପିଲାଙ୍କ ପାଇଁ ତ ସମସ୍ତେ କରନ୍ତି ।

**ପ୍ରଶ୍ନକର୍ତ୍ତା :** ପୁଣ୍ୟର ବୃଦ୍ଧି ହେଉ, ତା'ପାଇଁ କ'ଣ କରିବୁ ?

**ଦାଦାଶ୍ରୀ :** ଦିନ ସାରା ଲୋକଙ୍କର ଉପକାର ହିଁ କରିଚାଲିବା । ଏହି ମନଯୋଗ, ବାଣୀଯୋଗ ଏବଂ ଦେହଯୋଗ ଲୋକଙ୍କ ପାଇଁ ଖର୍ଚ୍ଚ କରିବା, ତାହାକୁ ପୁଣ୍ୟ କୁହାଯାଏ ।

## ପୁଣ୍ୟ-ପାପ, ପତି-ପତ୍ନୀଙ୍କ ମଧ୍ୟରେ...

**ପ୍ରଶ୍ନକର୍ତ୍ତା :** ପତି-ପତ୍ନୀ ଦୁହେଁ ପାଖାପାଖି ପୁରା ସମୟ ସାଥିରେ ରହନ୍ତି, ସେମାନଙ୍କ ବ୍ୟବହାର ଅର୍ଥାତ ସେମାନଙ୍କ କର୍ମ ମଧ୍ୟ ମିଳିତ ରୂପେ ବନ୍ଧା ହୋଇଥାଏ, ତେବେ ତାହାର ଫଳ ସେମାନଙ୍କୁ କିପରି ଭୋଗିବାକୁ ହୁଏ ?

**ଦାଦାଶ୍ରୀ :** ତୁମ ଭାବ ଯେପରି ଥିବ ତୁମକୁ ସେହିପରି ଫଳ ଭୋଗିବାକୁ ହେବ ଏବଂ ତାଙ୍କ ଭାବ ଯେପରି ଥିବ ତାଙ୍କୁ ସେପରି ଫଳ ଭୋଗିବାକୁ ହେବ ।

**ପ୍ରଶ୍ନକର୍ତ୍ତା :** କ'ଣ ଏପରି ହୁଏ ଯେ ପତ୍ନୀର ପୁଣ୍ୟରେ ପୁରୁଷର ଚାଲେ ?

ଏପରି କୁହନ୍ତି ନା ଯେ, ପତ୍ନୀର ପୁଣ୍ୟରେ, ପତ୍ନୀ ଲକ୍ଷ୍ମୀ ଅଟେ ଅଥବା ଘରର ସବୁ ଭଲ ଅଟେ, ଏପରି ହୁଏ କି ?

**ଦାଦାଶ୍ରୀ :** ତାହା ତ ଆମ ଲୋକେ, ଜଣେ କେହି ବ୍ୟକ୍ତି ପତ୍ନୀକୁ ବହୁତ ମାରୁଥିଲା, ତେବେ ତା'କୁ ବୁଝାଇଲେ ଯେ ମୁର୍ଖ, ଏ ତୋ ପତ୍ନୀର ଭାଗ୍ୟ ତ ଦେଖ, କାହିଁକି ମାରୁଛୁ ? ତା' ପୁଣ୍ୟର ତ ତୁ ଖାଉଛୁ । ତା'ପରେ କଥା ଆରମ୍ଭ ହୋଇଗଲା । ପ୍ରତ୍ୟେକ ଜୀବ ନିଜ ପୁଣ୍ୟର ହିଁ ଖାଆନ୍ତି । ସମସ୍ତେ ନିଜ ପୁଣ୍ୟର ହିଁ ଭୋଗନ୍ତି । ପୁଣି କାହାକୁ କିଛି ନେବା-ଦେବା ହିଁ ନାହିଁ । ଗୋଟିଏ ସାମାନ୍ୟ ବାଳ ଯେତିକି ବି ଝଂଝଟ ନାହିଁ ।

**ପ୍ରଶ୍ନକର୍ତ୍ତା :** ଏପରି ଦାନ କରନ୍ତି, କୌଣସି ଶୁଭ କର୍ମ କରନ୍ତି, ଉଦାହରଣ ରୂପେ ପୁରୁଷ ଦାନ କରେ, ସ୍ତ୍ରୀ ସେଥିରେ ସହମତ ଥାଏ, ତା'ର ସହଯୋଗ ଥାଏ, ତେବେ ଉଭୟଙ୍କୁ ଫଳ ମିଳେ ?

**ଦାଦାଶ୍ରୀ :** ପୁରୁଷ ଅର୍ଥାତ କରିବାବାଲା ଏବଂ ସହଯୋଗ ଥାଏ ଅର୍ଥାତ କର୍ତ୍ତାପ୍ରତି ଅନୁମୋଦନ କରିବାବାଲା । କରିବାବାଲା, କରାଇବାବାଲା ଏବ କର୍ତ୍ତାପ୍ରତି ଅନୁମୋଦନ କରିବା ବାଲା, କେହି ତୁମକୁ କହିଥାଏ ଯେ ଏହା କରିବ, କରିବା ଯୋଗ୍ୟ ଅଟେ, ତେବେ ସେ କରାଇବାବାଲା କୁହାଯିବ, ତୁମେ କରିବାବାଲା କୁହାଯିବ ଆଉ ସ୍ତ୍ରୀ ଯଦି ଆପତ୍ତି ନ ଉଠାଏ ତେବେ ସେ କର୍ତ୍ତା ପ୍ରତି ଅନୁମୋଦନ କଲା କୁହାଯିବ । ଏ ସମସ୍ତଙ୍କୁ ପୁଣ୍ୟ ପ୍ରାପ୍ତ ହୁଏ । କିନ୍ତୁ କରିବାବାଲା ଭାଗରେ ପଚାଷ ପ୍ରତିଶତ ଏବଂ ପଚାଷ ପ୍ରତିଶତ ଅନୁମୋଦନା କରିବାବାଲାଙ୍କ ଭାଗରେ, ସେ ଦୁହିଁଙ୍କ ମଧ୍ୟରେ ବାଣ୍ଟି ହୋଇଯାଏ ।

**ପ୍ରଶ୍ନକର୍ତ୍ତା :** ଭଉଣୀ କହୁଛନ୍ତି, ମୋତେ ପଚିଶ ପ୍ରତିଶତ ଦେବ, ତାହା ଚଳିବ ନାହିଁ ।

**ଦାଦାଶ୍ରୀ :** ତେବେ ନିଜେ କର । ଘର ଲୋକ ତ ମାଲିକ(ପତି)କୁ କୁହନ୍ତି ଯେ ଏହା ତୁମେ ଯଦି ଓଲଟା-ସିଧା କରି ପଇସା ଆଣିବ ତେବେ ତାହାର ପାପ ତୁମକୁ ଲାଗିବ, ଆମକୁ କିଛି ଭୋଗିବାର ନାହିଁ । ଆମକୁ ଏପରି ଦରକାର ନାହିଁ । ଯିଏ କରେ ସେ ଭୋଗେ ଏବଂ ଘରଲୋକ କୁହନ୍ତି ଯେ ଆମକୁ ଦରକାର ନାହିଁ, ଅର୍ଥାତ ସେମାନେ ଅନୁମୋଦନା କଲେ ନାହିଁ, ସେଥିପାଇଁ ସେଥିରୁ ମୁକ୍ତ ହୋଇଗଲେ । ଆଉ 'ଏପରି

କର' ଯଦି କୁହନ୍ତି ତେବେ ଭାଗୀଦାର ହୋଇଗଲେ, ପାର୍ଟନରଶିପ୍ ଯଦି କରିବାର ଥିବ ତେବେ ନିଜ ଇଚ୍ଛାର କଥା । ସେଠି କୌଣସି ଡିଡ୍ (କବଲା) କରିବାକୁ ପଡ଼େ ନାହିଁ ଅଥବା ଷ୍ଟାମ୍ପ୍ ମାରିବାକୁ ପଡ଼େ ନାହିଁ । ବିନା ଷ୍ଟାମ୍ପ୍‌ରେ ଚଳେ ।

## 'କପ୍ ଭାଙ୍ଗିଲା ତେବେ ମଧ୍ୟ ପୁଣ୍ୟ ବନ୍ଧନ ?'

କେହି କହିବ ଯେ, 'ମୋତେ ଜ୍ଞାନ ମିଳିନାହିଁ, ସମକିତ୍ ହୋଇନାହିଁ, ତେବେ ମୋତେ କ'ଣ କରିବା ଉଚିତ ? ମୋତେ ଅଲଗା କ୍ଷତି ସହିବାର ନାହିଁ !' ତେବେ ମୁଁ ତା'କୁ କହିବି ଯେ, 'ଏହି ମନ୍ତ୍ର ଶିଖି ଯା, ଯେ ଯଦି କପ୍ ଭାଙ୍ଗିଯାଏ ତେବେ କହିବୁ, 'ଭଲ ହେଲା ଗଲା ଜଞ୍ଜାଳ, ଏବେ ନୂଆ କପ୍ ଆଣିବି ।' ତେବେ ତାହାଦ୍ୱାରା ପୁଣ୍ୟ ବନ୍ଧନ ହେବ । କାହିଁକିନା ଚିନ୍ତା କରିବା ଜାଗାରେ ସେ ଆନନ୍ଦ କଲା, ସେଥିପାଇଁ ପୁଣ୍ୟ ବନ୍ଧନ ହେବ । ଏତିକି ଖାଲି ଯଦି ଆସିଯିବ ତେବେ ବହୁତ ହୋଇଗଲା ! ମୋତେ ପିଲାଦିନରୁ ହିଁ ଏପରି ଦୃଷ୍ଟି ଥିଲା, କୌଣସି ଦିନ ଚିନ୍ତା ହିଁ କରି ନାହିଁ । ଯଦି ଏପରି କିଛି ହୋଇଯାଏ ତେବେ ସେହି ସମୟରେ ଏପରି କିଛି ଭିତରେ ଆସି ହିଁ ଯାଉଥିଲା । ଏପରି ଶିଖାଇବା ଦ୍ୱାରା ଆସୁ ନଥିଲା, କିନ୍ତୁ ତୁରନ୍ତ ଅଟୋମେଟିକ୍ ସବୁ ଆସି ହିଁ ଯାଉଥିଲା ।

## ଜଣଙ୍କ ନିମିତ୍ତରୁ ଅନ୍ୟ ଜଣଙ୍କୁ ମିଳେ ?

**ପ୍ରଶ୍ନକର୍ତ୍ତା :** ଯାହା ପାଇଁ ଖର୍ଚ୍ଚ କଲୁ, ତା' ଭାଗକୁ ପୁଣ୍ୟ ଯାଏ ନା ? କରିବାବାଲାକୁ ମିଳେ ନାହିଁ ନା ? ତୁମେ ଯାହା ପାଇଁ ଯେଉଁ କାର୍ଯ୍ୟ କର, ତାହାର ଫଳ ତା'କୁ ମିଳେ ? ଆମେ ଯାହା ପାଇଁ ଯେଉଁ କାର୍ଯ୍ୟ କରୁ, ତା' ପାଇଁ ପୁଣ୍ୟ କରୁ, ତାହା ତା'କୁ ମିଳେ, ଆମକୁ ମିଳେ ନାହିଁ ? ଯିଏ କରେ ତା'କୁ ମିଳେ ନାହିଁ ?

**ଦାଦାଶ୍ରୀ :** କରିବା ଆମେ ଆଉ ମିଳିବ ଅନ୍ୟକୁ ? ଏପରି ଶୁଣିଛ କେବେ ?

**ପ୍ରଶ୍ନକର୍ତ୍ତା :** ତା' ନିମିତ୍ତରୁ ଆମେ କରୁଛୁ ନା ?

**ଦାଦାଶ୍ରୀ :** ତା' ନିମିତ୍ତରୁ ଆମେ କରିବା, ତେବେ ତା' ନିମିତ୍ତରୁ ଆମେ ଖାଇଦେଲେ କ'ଣ ଅସୁବିଧା ହୁଅନ୍ତା ? ନା, ନା । ସେମିତି ସବୁ ଏଥିରେ ନାହିଁ । ଏହା ତ ଗୋଳିଆଘାଣ୍ଟ କରି ଲୋକଙ୍କୁ ଓଲଟା ରାସ୍ତାରେ ଚଢ଼ାଉଛନ୍ତି, ତା' ନିମିତ୍ତରୁ ! ତା'କୁ ଖାଇବାର ନଥିବ ଆଉ ଆମେ ଖାଇବା ତେବେ କ'ଣ ଭୁଲ୍ ? ପୁରା ନିୟମବାଲା

ଅଟେ ସାରା ଜଗତ ! ତୁମେ କରିବ ତେବେ ତୁମକୁ ହିଁ ଭୋଗିବାକୁ ପଡ଼ିବ । ଅନ୍ୟ କାହାକୁ ନେବା-ଦେବା ନାହିଁ ।

## ବାଃ-ବାଃ ରେ ଖର୍ଚ୍ଚ ହେଲା ପୁଣ୍ୟ

**ପ୍ରଶ୍ନକର୍ତ୍ତା :** ଏହା ଯେଉଁ କହୁଛନ୍ତି, ସେପରି ଯଦି ନିୟମ ହୋଇଥିବ, ତେବେ ହୀରାବା(ଦାଦାଶ୍ରୀଙ୍କ ପତ୍ନୀ)ଙ୍କ ପଛରେ ଆପଣ ଖର୍ଚ୍ଚ କଲେ, ତେବେ ଆପଣଙ୍କୁ ପୁଣ୍ୟ ମିଳିବ ।

**ଦାଦାଶ୍ରୀ :** ମୋତେ କ'ଣ ମିଳିବ ? ମୋତେ ନେବା-ଦେବା ନାହିଁ । ମୋତେ ତ କୌଣସି ନେବା-ଦେବା ହିଁ ନାହିଁ ନା ! ଏଥିରେ ପୁଣ୍ୟ ବନ୍ଧନ ହୁଏ ନାହିଁ । ଏହା ତ ପୁଣ୍ୟ ଭୋଗି ନିଆଯାଏ । ବାଃ-ବାଃ ହୋଇଯାଏ ।

ନହେଲେ କେହି ଯଦି ଖରାପ କରିଦିଏ ତେବେ, 'ମୂର୍ଖକୁ ଦେଖ, ସବୁ ବିଗାଡ଼ି ଦେଲା' କହିବେ । ଅର୍ଥାତ ଏଠାକାର ସବୁ ଏଇଠି ହିଁ ମିଳିଯାଏ । ହାଇସ୍କୁଲ ତିଆରି କରିଥିଲ, ତେବେ ଏଇଠି ହିଁ ବାଃ-ବାଃ ହୋଇଗଲା । ସେଠି କିଛି ମିଳିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ସ୍କୁଲ ତ ପିଲାମାନଙ୍କ ପାଇଁ ତିଆରି କରିଥିଲି, ସେମାନେ ପଢ଼ନ୍ତୁ-ଲେଖନ୍ତୁ, ସଦ୍‌ବିଚାର ଉତ୍ପନ୍ନ ହେଉ ।

**ଦାଦାଶ୍ରୀ :** ତାହା ଅଲଗା କଥା । କିନ୍ତୁ ତୁମର ବାଃ-ବାଃ ହେଲା, ତେବେ ମାନିନିଅ ପୂର୍ଣ୍ଣ ହୋଇଗଲା, ଖର୍ଚ୍ଚ ହୋଇଗଲା ।

## ଟେଣ୍ଡର ପାସ୍ କରାଇବା ପାଇଁ ଦରକାର ପୁଣ୍ୟ...

**ପ୍ରଶ୍ନକର୍ତ୍ତା :** ସବୁଲୋକ ଲକ୍ଷ୍ମୀ ପଛରେ ବହୁତ ଦୌଡ଼ନ୍ତି । ଏଣୁ ତାହାର ଚାର୍ଜ ଅଧିକ ହେବ ନା, ତେବେ ଆସନ୍ତା ଜନ୍ମରେ ତା'ଙ୍କୁ ଲକ୍ଷ୍ମୀ ଅଧିକ ମିଳିବା ଉଚିତ ନା ?

**ଦାଦାଶ୍ରୀ :** ଆମକୁ ଲକ୍ଷ୍ମୀ ଧର୍ମ ମାର୍ଗରେ ଖର୍ଚ୍ଚ କରିବାର ଅଛି, ଏପରି ଯଦି ଚାର୍ଜ କରିଥିବ ତେବେ ଅଧିକ ମିଳିବ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଯଦି ମନରେ ଏପରି ଭାବ କରିଚାଲେ ଯେ ମୋତେ ଲକ୍ଷ୍ମୀ ମିଳୁ, ଏପରି ଭାବ କଲା ତାହା 'ଚାର୍ଜ' କଲା ତେବେ ପ୍ରକୃତି ତା'କୁ ପର ଜନ୍ମରେ ଲକ୍ଷ୍ମୀର ପୂର୍ତ୍ତି କରିବ ନାହିଁ ?

**ଦାଦାଶ୍ରୀ :** ନା, ନା । ତାହାଦ୍ୱାରା ଲକ୍ଷ୍ମୀ ପ୍ରାପ୍ତ ହୁଏ ନାହିଁ । ଏ ଲକ୍ଷ୍ମୀ ମିଳିବାର ଯେଉଁ ଭାବ କରନ୍ତି ନା, ତାହାଦ୍ୱାରା ଯଦି ଲକ୍ଷ୍ମୀ ମିଳିବାର ଥିବ ତେବେ ମଧ୍ୟ ମିଳେ ନାହିଁ । ଓଲଟା ଅନ୍ତରାୟ ପଡ଼େ । ଲକ୍ଷ୍ମୀ ସ୍ମରଣ କରିବାଦ୍ୱାରା ମିଳେ ନାହିଁ, ତାହା ତ ପୁଣ୍ୟ କରିବାଦ୍ୱାରା ମିଳେ ।

'ଚାର୍ଜ' ଅର୍ଥାତ ଯଦି ପୁଣ୍ୟର ଚାର୍ଜ କରେ ତେବେ ଲକ୍ଷ୍ମୀ ମିଳେ । ତାହା ମଧ୍ୟ କେବଳ ଲକ୍ଷ୍ମୀ ମିଳେ ଏପରି ନୁହେଁ । ପୁଣ୍ୟର ଚାର୍ଜରେ ଯାହାର ଇଚ୍ଛା ଥାଏ ଯେ ମୋତେ ଲକ୍ଷ୍ମୀର ବହୁତ ଆବଶ୍ୟକତା ଅଛି, ତେବେ ତା'କୁ ଲକ୍ଷ୍ମୀ ମିଳେ । କେହି କହିବ, ମୋତେ ତ କେବଳ ଧର୍ମ ହିଁ ଦରକାର । ତେବେ କେବଳ ଧର୍ମ ମିଳିଯିବ ଆଉ ପଇସା ନଥାଇ ବି ପାରେ । ଅର୍ଥାତ ସେହି ପୁଣ୍ୟର ଆମେ ପୁଣି ଟେଣ୍ଡର୍ ଭରିଥାଉ ଯେ ମୋତେ ଏପରି ଦରକାର । ତାହା ମିଳିବାରେ ପୁଣ୍ୟ ଖର୍ଚ୍ଚ ହୋଇଯାଏ ।

କେହି କହିବ, 'ମୋତେ ବଙ୍ଗଳା ଦରକାର, ଗାଡ଼ି ଦରକାର, ଏମିତି ଦରକାର, ସେମିତି ଦରକାର ।' ତେବେ ପୁଣ୍ୟ ସେଥିରେ ଖର୍ଚ୍ଚ ହୋଇଯିବ । ତେବେ ଧର୍ମ ପାଇଁ କିଛି ବି ରହିବ ନାହିଁ । ଆଉ କେହି କହିବ, ମୋତେ ଧର୍ମ ହିଁ ଦରକାର । ଗାଡ଼ି ଦରକାର ନାହିଁ । ମୋତେ ତ ଏତିକି ଦୁଇଟି ରୁମ୍ ଥିବ ତେବେ ମଧ୍ୟ ଚଳିବ, କିନ୍ତୁ ଧର୍ମ ଅଧିକ ଦରକାର । ତେବେ ତା'ର ଧର୍ମ ଅଧିକ ହେବ ଏବଂ ଅନ୍ୟ ସବୁ କମ୍ ହେବ । ଅର୍ଥାତ ସମସ୍ତେ ନିଜ ହିସାବରେ ପୁଣ୍ୟର ଟେଣ୍ଡର୍ ଭରନ୍ତି ।

## ଦାନ ଅର୍ଥାତ ବୁଣ ଏବଂ କାଟ

**ପ୍ରଶ୍ନକର୍ତ୍ତା :** ଆତ୍ମା ଏବଂ ଦାନର କୌଣସି ସମ୍ବନ୍ଧ ନାହିଁ ତେବେ ପୁଣି ଏହି ଦାନ କରିବା ଆବଶ୍ୟକ ଅଟେ କି ନାହିଁ ?

**ଦାଦାଶ୍ରୀ :** ଦାନ ଅର୍ଥାତ କ'ଣ ଯେ ଦିଅ ଏବଂ ନିଅ । ଏହି ଜଗତ ପ୍ରତିଧ୍ୱନି ସ୍ୱରୂପ ଅଟେ । ଏଣୁ ଯାହା ତୁମେ କରିବ ସେହିପରି ପ୍ରତିଧ୍ୱନି ଆସିବ, ତାହାର ସୁଧ ସହିତ । ସେଥିପାଇଁ ତୁମେ ଦିଅ ଏବଂ ନିଅ । ଏହା ପୂର୍ବଜନ୍ମରେ ଦେଇଥିଲ, ଭଲ କର୍ମରେ ପଇସା ଖର୍ଚ୍ଚ କରିଥିଲ, ଏମିତି କିଛି କରିଥିଲ, ତାହାର ଫଳ ତୁମକୁ ମିଳିଲା । ଏବେ ପୁଣି ଏପରି ଯଦି ନ କରିବ ତେବେ ତଳିତଳାନ୍ତ ହୋଇଯିବ । ଆମେ କ୍ଷେତରୁ ଚାରିଶହ ମହଣ ଗହମ ଆଣି ତ ଆସିଲେ, କିନ୍ତୁ ଭାଇ ସେଥିରୁ ପଚାଶ ମହଣ ଯଦି ନ ବୁଣାଯିବ ତେବେ ପୁଣି ?

**ପ୍ରଶ୍ନକର୍ତ୍ତା :** ତେବେ ଫଳିବ ନାହିଁ ।

**ଦାଦାଶ୍ରୀ :** ସେହିପରି ଅଟେ ଏସବୁ । ସେଥିପାଇଁ ଦେବା ଉଚିତ । ଏହାର ପ୍ରତିଧ୍ୱନି ହିଁ ଆସିବ, ଫେରିକି ଆସିବ, ଅନେକ ଗୁଣା ହୋଇ । ପୂର୍ବଜନ୍ମରେ ଦେଇଥିଲ, ସେଥିପାଇଁ ତ ଆମେରିକା ଆସି ପାରିଲ, ନହେଲେ ଆମେରିକା ଆସିବା କ'ଣ ସହଜ କଥା ? କେତେ ପୁଣ୍ୟ କରିଥିବ ତେବେ ଏହି ପ୍ଲେନ୍‌ରେ ବସିବାକୁ ମିଳେ, କେତେ ଲୋକ ପ୍ଲେନ୍ ଦେଖି ବି ନାହାନ୍ତି !

**ପ୍ରଶ୍ନକର୍ତ୍ତା :** ଯେପରି ଇଣ୍ଡିଆରେ କସ୍ତୁରଭାଇ ଲାଲଭାଇଙ୍କ ପିଢ଼ି ଅଛି, ତେବେ ତାଙ୍କର ଦୁଇ-ତିନି-ଚାରି ପିଢ଼ି ପର୍ଯ୍ୟନ୍ତ ପଇସା ଚାଲିଥାଏ, ତାଙ୍କ ପିଲାଙ୍କ ପିଲା ପର୍ଯ୍ୟନ୍ତ । ଯେବେକି ଏଠି ଆମେରିକାରେ କିପରି ଅଟେ ଯେ ପିଢ଼ି ଥାଏ, କିନ୍ତୁ ବେଶୀରୁ ବେଶୀ ଛଅ-ଆଠ ବର୍ଷରେ ସବୁ ଶେଷ ହୋଇଯାଏ, ନହେଲେ ପୁଣି ଯଦି ପଇସା ଥାଏ ତେବେ ଚାଲିଯାଏ ଆଉ ନଥାଏ ତେବେ ପଇସା ଆସି ବି ଯାଏ । ତେବେ ତାହାର କାରଣ କ'ଣ ହୋଇଥିବ ?

**ଦାଦାଶ୍ରୀ :** ଏପରି ଅଟେ, ସେଠାକାର ଯେଉଁ ପୁଣ୍ୟ, ଇଣ୍ଡିଆର ପୁଣ୍ୟ, ସେହି ପୁଣ୍ୟ ଏତେ ଗାଢ଼ ହୋଇଥାଏ ଯେ ଧୋଇ ଚାଲିଥିବା, ତଥାପି ଯାଏ ନାହିଁ ଏବଂ ପାପ ବି ଏପରି ଗାଢ଼ ହୋଇଥାଏ ଯେ ଧୋଇ ଚାଲିଥିବା, ତଥାପି ଯାଏ ନାହିଁ । ସେଥିପାଇଁ, ବୈଷ୍ଣବ ହେଉ ଅବା ଜୈନ ହେଉ, ମାତ୍ର ସେ ପୁଣ୍ୟ ଏତେ ମଜଭୁତ୍ ବାନ୍ଧିଥାଏ ଯେ ଧୋଇ ଚାଲିଥିବ ତଥାପି ଯାଏ ନାହିଁ । ଯେପରିକି ପେଟଲାଦ୍ ର ଦାନବୀର ସେଠ୍, ରମଣଲାଲ ସେଠ୍‌ଙ୍କର ସାତ-ସାତ ପିଢ଼ି ପର୍ଯ୍ୟନ୍ତ ସମୃଦ୍ଧି ଥିଲା । କୋଦାଳରେ ଖୋଳି-ଖୋଳି ଲୋକଙ୍କୁ ଧନ ଦେଉଥିଲେ, ତଥାପି କେବେ ଅଭାବ ପଡ଼ିଲା ନାହିଁ । ସେମାନେ ଜବରଦସ୍ତ ପୁଣ୍ୟ ବାନ୍ଧିଥିଲେ, ସଚ୍ଚୋଟ । ଆଉ ପାପ ବି ଏପରି ସଚ୍ଚୋଟ ବାନ୍ଧନ୍ତି, ସାତ-ସାତ ପିଢ଼ି ପର୍ଯ୍ୟନ୍ତ ଦାରିଦ୍ର୍ୟ ଯାଏ ନାହିଁ । ଅତ୍ୟନ୍ତ ଦୁଃଖ ଭୋଗନ୍ତି, ଅର୍ଥାତ ଏକ୍ସେସ୍ ବି ହୁଏ ଏବଂ ମିଡ଼ିୟମ୍ ବି ରହେ ।

ଏଠି ଆମେରିକାରେ ତ ଉଛୁଳେ ବି ଏବଂ ବସି ବି ଯାଏ ଏବଂ ପୁଣି ଉଛୁଳେ । ବସିଯିବା ପରେ, ପୁଣି ଉଛୁଳେ । ଏଠି ବିଳମ୍ବ ହୁଏ ନାହିଁ ଆଉ ସେଠି ଇଣ୍ଡିଆରେ ତ ବସିଯିବା ପରେ ଉଛୁଳିବା ପାଇଁ ବହୁତ ଟାଇମ୍ ଲାଗେ । ଏଥିପାଇଁ ସେଠି ତ ସାତ-ସାତ ପିଢ଼ି ପର୍ଯ୍ୟନ୍ତ ଚାଲୁଥିଲା । ଏବେ ସବୁ ପୁଣ୍ୟ କମି ଯାଇଛି । କାହିଁକିନା କ'ଣ

ହୁଏ ? କସ୍ତୁରଭାଇଙ୍କ ଘରେ କିଏ ଜନ୍ମ ନେବ ? ତେବେ କହିବା, ଏପରି ପୁଣ୍ୟଶାଳୀ ଯିଏ ତାଙ୍କ ପରି ହିଁ ହୋଇଥିବ, ସେ ହିଁ ସେଠାରେ ଜନ୍ମ ନେବ । ପୁଣି ତା' ପାଖରେ କିଏ ଜନ୍ମିବ ? ସେହିପରି ପୁଣ୍ୟଶାଳୀ ପୁଣି ସେଠି ଜନ୍ମେ । ତାହା କସ୍ତୁରଭାଇଙ୍କ ପୁଣ୍ୟ କାମ କରେ ନାହିଁ । ତାହା ପୁଣି ଆଉ କେହି ସେପରି ଆସିଥିବ, ତେବେ ପୁଣି ତା' ପୁଣ୍ୟ । ଅର୍ଥାତ କୁହାଯାଏ ଯେ କସ୍ତୁରଭାଇଙ୍କ ପିଢ଼ି, ଆଉ ଆଜି ତ ଏପରି ପୁଣ୍ୟଶାଳୀ ଅଛନ୍ତି ହିଁ କେଉଁଠି ? ଏବେ ବର୍ତ୍ତମାନ ଏହି ବିଗତ ପଚିଶ ବର୍ଷରେ ତ କେହି ଖାସ୍ ଏପରି ନାହାନ୍ତି ।

## ଦୁଇ ନମ୍ବରୀ ଧନର ଦାନ...

**ପ୍ରଶ୍ନକର୍ତ୍ତା :** ଦୁଇ ନମ୍ବରୀ ଟଙ୍କାର ଦାନ ଦେଲେ ତାହା ଚଳିବ ନାହିଁ ?

**ଦାଦାଶ୍ରୀ :** ଦୁଇ ନମ୍ବରର ଦାନ ଚଳିବ ନାହିଁ । କିନ୍ତୁ ତଥାପି କେଉଁ ବ୍ୟକ୍ତି ଯଦି ଭୋକରେ ମରୁଥିବ ଏବଂ ଦୁଇ ନମ୍ବରର ଦାନ ଦେବା ତେବେ ତା'କୁ ଖାଇବା ପାଇଁ ତ ଚଳିବ ନା ! ଦୁଇ ନମ୍ବରରେ କିଛି ନିୟମ ଅନୁସାରେ ଅସୁବିଧା ଆସେ, କିନ୍ତୁ ଅନ୍ୟ ହିସାବରେ ଅସୁବିଧା ହୁଏ ନାହିଁ । ସେ ଧନ ଯଦି ହୋଟେଲବାଲାକୁ ଦେବା ତେବେ ସେ ନେବ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ନେଇ ଯିବ ।

**ଦାଦାଶ୍ରୀ :** ହଁ, ସେହି ବ୍ୟବହାର ଆରମ୍ଭ ହୋଇଯାଏ ।

**ପ୍ରଶ୍ନକର୍ତ୍ତା :** ଆଜିକା ଜମାନାରେ ଦୁଇ ନମ୍ବରର ପଇସା ଧର୍ମରେ ଖର୍ଚ୍ଚ ହେଉଛି, ତେବେ ତାହାଦ୍ୱାରା କ'ଣ ଲୋକଙ୍କୁ ପୁଣ୍ୟୋପାର୍ଜନ ହୁଏ ?

**ଦାଦାଶ୍ରୀ :** ଅବଶ୍ୟ ହୁଏ ! ସେ ସେତିକି ତ୍ୟାଗ କଲା ନା ! ନିଜ ପାଖକୁ ଯାହା ଆସିଥିଲା ସେଥିରୁ ତ୍ୟାଗ କଲା ନା ! କିନ୍ତୁ ସେଥିରେ ହେତୁ(ଉଦ୍ଦେଶ୍ୟ) ଅନୁସାରେ ପୁଣି ସେହି ପୁଣ୍ୟ ସେହିପରି ହୋଇଯାଏ, ହେତୁବାଲା ! ଏହି ପଇସା ଦେଲା, ସେହି ଗୋଟିଏ ହିଁ ଜିନିଷ ଦେଖାଯାଏ ନାହିଁ । ପଇସାର ତ୍ୟାଗ କଲା ତାହା ନିର୍ବିବାଦ ଅଟେ । କିନ୍ତୁ ପଇସା କେଉଁଠୁ ଆସିଲା, ହେତୁ କ'ଣ ଅଛି, ଏସବୁ ପ୍ଲସ୍-ମାଇନସ୍ ହୋଇ-ହୋଇ ଯାହା ବାକି ରହିବ, ତାହା ତା'ର । ତା'ର ହେତୁ କ'ଣ ଅଛି ଯେ ସରକାର ନେଇଯିବ, ତାହା ଅପେକ୍ଷା ଏଠି ପକେଇ ଦିଅ !

## ଶାସ୍ତ୍ର ଅଧ୍ୟୟନ, ପାପ କ୍ଷୟ କରେ ?

**ପ୍ରଶ୍ନକର୍ତ୍ତା :** ସତ୍ ଶାସ୍ତ୍ରର ପଠନ ଦ୍ୱାରା ପାପର କ୍ଷୟ ହୋଇପାରିବ ନାହିଁ ?

**ଦାଦାଶ୍ରୀ :** ନା, ତାହା ଦ୍ୱାରା ପୁଣ୍ୟ ବନ୍ଧନ ନିଶ୍ଚିତ ହୁଏ । ପାପର କ୍ଷୟ ହୁଏ ନାହିଁ । ଅଲଗା ନୂଆ ପୁଣ୍ୟ ବନ୍ଧନ ହୁଏ, ତାହାକୁ ପୁଣ୍ୟାନୁବନ୍ଧୀ ପୁଣ୍ୟ କୁହାଯାଏ । ସତ୍ ଶାସ୍ତ୍ରର ଅଭ୍ୟାସ କରନ୍ତି ସେଥିରେ ସ୍ୱାଧ୍ୟାୟ ହୁଏ, ତାହା ଦ୍ୱାରା ଚିତ୍ତର ଏକାଗ୍ରତା, ମନର ଏକାଗ୍ରତା ବହୁତ ସୁନ୍ଦର ହୋଇଯାଏ ।

## ପାପ ଧୋଇ ହୁଏ, ପ୍ରତିକ୍ରମଣ ଦ୍ୱାରା

**ପ୍ରଶ୍ନକର୍ତ୍ତା :** ପାପ ଧୋଇବା ଯଦି ଆସୁଥିବ ତେବେ ?

**ଦାଦାଶ୍ରୀ :** ଏପରି ଧୋଇବା ଆସେ ନାହିଁ । ଜ୍ଞାନୀପୁରୁଷ ଯେପର୍ଯ୍ୟନ୍ତ ରାସ୍ତା ନ ଦେଖାନ୍ତି ସେପର୍ଯ୍ୟନ୍ତ ପାପ ଧୋଇବା ଆସେ ନାହିଁ । ପାପ ଧୋଇବା ଅର୍ଥାତ କ'ଣ ? ମାନେ ପ୍ରତିକ୍ରମଣ କରିବା । ଅତିକ୍ରମଣ ଅର୍ଥାତ ପାପ କୁହାଯାଏ । ବ୍ୟବହାରରୁ ବାହାରେ କୌଣସି ବି କ୍ରିୟା କଲ ତାହା ପାପ କୁହାଯାଏ, ଅତିକ୍ରମଣ କୁହାଯାଏ । ସେଥିପାଇଁ ତାହାର ପ୍ରତିକ୍ରମଣ କରିବାକୁ ପଡ଼େ । ଯାହାଦ୍ୱାରା ସେ ସବୁ ପାପ ଧୋଇ ହୋଇଯାଏ, ନହେଲେ ପାପ ଧୋଇ ହୁଏ ନାହିଁ ।

## ପଶ୍ଚାତାପ କେବେ ନକଲି ହୁଏ ନାହିଁ

**ଦାଦାଶ୍ରୀ :** ଏପରି ତୁମେ କେତେ ପ୍ରତିକ୍ରମଣ କରୁଛ ?

**ପ୍ରଶ୍ନକର୍ତ୍ତା :** କାହାକୁ ଯଦି ଦୁଃଖ ହୋଇଯାଏ ତେବେ ତୁରନ୍ତ ପଶ୍ଚାତାପ କରୁଛି ।

**ଦାଦାଶ୍ରୀ :** ପଶ୍ଚାତାପ ତ ଯେଉଁ ବେଦନା ହୁଏ ତାହା । ତାହାକୁ ପ୍ରତିକ୍ରମଣ କୁହାଯାଏ ନାହିଁ । ତଥାପି ତାହା ଭଲ ଅଟେ ।

**ପ୍ରଶ୍ନକର୍ତ୍ତା :** ଗୋଟିଏ ପଟେ ପାପ କରିଚାଲେ ଏବଂ ଅନ୍ୟପଟେ ପଶ୍ଚାତାପ କରିଚାଲେ । ଏମିତି ତ ଚାଲୁ ହିଁ ରହିବ ।

**ଦାଦାଶ୍ରୀ :** ସେପରି ହୁଏ ନାହିଁ । ଯେଉଁ ବ୍ୟକ୍ତି ପାପ କରେ, ସେ ଯଦି

ପଶ୍ଚାତାପ କରେ ତେବେ ସେ ନକଲି ପଶ୍ଚାତାପ କରିପାରିବ ହିଁ ନାହିଁ, ତା'ର ପଶ୍ଚାତାପ ପ୍ରକୃତ ହିଁ ହୋଇଥାଏ । ପଶ୍ଚାତାପ ପ୍ରକୃତ ହୋଇଥାଏ, ସେଥିପାଇଁ ତାହା ପରେ ପିଆଜର ଗୋଟିଏ ପରସ୍ତ ବାହାରି ଯାଏ । ତଥାପି ପିଆଜ ତ ପୁରା କୁ ପୁରା ହିଁ ଦେଖାଯାଏ ପୁଣି । ପରେ ପୁଣି ଦ୍ୱିତୀୟ ପରସ୍ତ ହଟେ, ପଶ୍ଚାତାପ କେବେ ବି ବ୍ୟର୍ଥ ଯାଏ ନାହିଁ । ପ୍ରତ୍ୟେକ ଧର୍ମ ପଶ୍ଚାତାପ କରିବା ହିଁ ଶିଖାଇଛନ୍ତି । ଖ୍ରୀଷ୍ଟିୟନ ମାନଙ୍କର ମଧ୍ୟ ପଶ୍ଚାତାପ କରିବାକୁ ହିଁ କହିଛନ୍ତି ।

## ପାପର ପ୍ରାୟଶ୍ଚିତ କିପରି ?

**ପ୍ରଶ୍ନକର୍ତ୍ତା :** ନିଜ ଦ୍ୱାରା କରାଯାଇଥିବା ପାପ ଯଦି ପ୍ରତି ରବିବାର ଭଗବାନଙ୍କ ମନ୍ଦିରରେ ଯାଇ ସ୍ୱୀକାର କରିନେଇଥିବୁ ତେବେ ପାପ କ୍ଷମା ହୋଇଯିବ ନା ?

**ଦାଦାଶ୍ରୀ :** ଏହିପରି ଯଦି ପାପ ଧୋଇଯାଉଥାନ୍ତା ତେବେ କାହାର ଦେହ ଖରାପ ହୁଅନ୍ତା ହିଁ ନାହିଁ ନା ? ପୁଣି ତ କିଛି ଦୁଃଖ ହୁଅନ୍ତା ହିଁ ନାହିଁ ନା ? ମାତ୍ର ଏ ତ ଅପାର ଦୁଃଖ ଆସେ । କ୍ଷମା ମାଗିବାର ଅର୍ଥ କ'ଣ ଯେ ଯଦି ତୁମେ କ୍ଷମା ମାଗ ତେବେ ତୁମ ପାପର ମୂଳ ଜଳିଯାଏ । ସେଥିପାଇଁ ପୁଣି ତାହା ଅଙ୍କୁରିତ ହୁଏ ନାହିଁ, କିନ୍ତୁ ତାହାର ଫଳ ତ ଭୋଗିବାକୁ ହିଁ ପଡ଼ିବ ନା !

**ପ୍ରଶ୍ନକର୍ତ୍ତା :** କିଛି ମୂଳ ତ ପୁଣି ଭିତରୁ ବାହାରନ୍ତି ।

**ଦାଦାଶ୍ରୀ :** ଠିକରେ ଯଦି ଜଳି ନଥିବ ତେବେ ପୁଣି ବାହାରିବ । କିନ୍ତୁ ମୂଳ ପଛେ ଯେତେ ବି ଜଳି ଯାଇଥାଉ କିନ୍ତୁ ଫଳ ତ ଭୋଗିବାକୁ ହିଁ ପଡ଼େ । ଭଗବାନଙ୍କୁ ମଧ୍ୟ ଭୋଗିବାକୁ ପଡ଼ିଥିଲା ! କୃଷ୍ଣ ଭଗବାନଙ୍କୁ ମଧ୍ୟ ଏଠି(ପାଦରେ) ତୀର ବାଜିଥିଲା । ସେଥିରେ କିଛି ହୋଇପାରିବ ନାହିଁ । ମୋତେ ବି ଭୋଗିବାକୁ ପଡୁଛି !

ପ୍ରତ୍ୟେକ ଧର୍ମରେ କ୍ଷମାର ସ୍ଥାନ ଅଛି । ଖ୍ରୀଷ୍ଟିୟନ, ମୁସଲିମ୍, ହିନ୍ଦୁ ସବୁଥିରେ ଅଛି । କିନ୍ତୁ ଅଲଗା-ଅଲଗା ପ୍ରକାରରେ ଥାଏ ।

**ପ୍ରଶ୍ନକର୍ତ୍ତା :** ପାଦ୍ରୀ ମଧ୍ୟ କୁହନ୍ତି ଯେ ଆମ ପାଖରେ କନ୍‌ଫେଶନ୍(ସ୍ୱୀକାର) କରି ଯାଅ ତେବେ ସବୁ ପାପର ନାଶ ହୋଇଯିବ ।

**ଦାଦାଶ୍ରୀ :** ଏପରି କନ୍‌ଫେଶ୍ କରିବା କଣ ସହଜ କଥା ? ତୁମ ଦ୍ୱାରା କନ୍‌ଫେଶନ୍ ହେବ କି ? ତାହା ତ ଅନ୍ଧାର ରାତିରେ ଅନ୍ଧାରରେ କରନ୍ତି, ସେ ବ୍ୟକ୍ତି

ଆଲୁଅରେ ମୁହଁ ଦେଖାଏ ନାହିଁ । ରାତିରେ ଅନ୍ଧାର ହେବ ତେବେ କନ୍‌ଫେଶନ୍ କରିବି, କହିବ । ଆଉ ମୋ ପାଖରେ ତ ଚାଳିଶ ହଜାର ଲୋକ, ଝିଅମାନେ ମଧ୍ୟ ସେମାନଙ୍କର ସବୁକିଛି କନ୍‌ଫେଶନ୍ କରିଛନ୍ତି । ଗୋଟି-ଗୋଟି କଥା କନ୍‌ଫେଶ୍ କରିଛନ୍ତି । ଏମିତି ଲିଖିତ ରୂପେ ଦେଇ ଦେଇଛନ୍ତି । ସର୍ବ ସାଧାରଣରେ କନ୍‌ଫେଶ୍ କଲେ, ତେବେ ପୁଣି ପାପ ନିଶ୍ଚିତ ରୂପେ ନାଶ ହୋଇଯିବ ନା ? କନ୍‌ଫେଶ୍ କରିବା ସହଜ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ଏହି ପ୍ରତିକ୍ରମଣ କରନ୍ତି ଏବଂ ସେହି କନ୍‌ଫେଶ୍, ଉଭୟ ଏକା ପରି ହିଁ ହେଲା ନା ?

**ଦାଦାଶ୍ରୀ :** ନା, ତାହା ଏକା ପରି ନୁହେଁ । ପ୍ରତିକ୍ରମଣ ତ, ଯଦି ଅତିକ୍ରମଣ ହୋଇଯାଏ ତେବେ ପୁଣି ଧୋଇ ଚାଲିବା ଏବଂ ଯଦି ପୁଣି ଦାଗ ପଡ଼େ ତେବେ ପୁଣି ଧୋଇବା, ଆଉ ପାପ କନ୍‌ଫେଶ୍ କରିବା, ପ୍ରକାଶ କରିବା, ଉଭୟ ଜିନିଷ ଅଲଗା ଅଟେ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ ଏବଂ ପଶ୍ଚାତାପ ମଧ୍ୟରେ କ'ଣ ଫରକ ?

**ଦାଦାଶ୍ରୀ :** ପଶ୍ଚାତାପ, ତାହା ଅସ୍ପଷ୍ଟ ଅଟେ । ଖ୍ରୀଷ୍ଟିୟନ ରବିବାର ଦିନ ଚର୍ଚ୍ଚରେ ପଶ୍ଚାତାପ କରନ୍ତି । ଯେଉଁ ପାପ କଲେ ତାହାର ସାମୂହିକ ପଶ୍ଚାତାପ କରନ୍ତି । ଆଉ ପ୍ରତିକ୍ରମଣ ତ କିପରି ଅଟେ ଯେ ଯିଏ ଗୁଳି ମାରିଲା, ଯିଏ ଅତିକ୍ରମଣ କଲା ସେ ପ୍ରତିକ୍ରମଣ କରେ, ତକ୍ଷଣ ! 'ଶୁଟ୍ ଅନ୍ ସାଇଟ୍'(ଦେଖିବା ମାତ୍ରେ ଗୁଳି ମାରିବା) ତାହାକୁ ଧୋଇଦିଏ !! ତାହା ଭାବ ପ୍ରତିକ୍ରମଣ କୁହାଯାଏ ।

## ପଶ୍ଚାତାପ ଦ୍ୱାରା କମେ ଦଣ୍ଡ

**ପ୍ରଶ୍ନକର୍ତ୍ତା :** ପାପକୁ ନିର୍ମୂଳ କରିବା ପାଇଁ ତ ପ୍ରାୟଶ୍ଚିତ ଉତ୍ତମ ମାର୍ଗ ଅଟେ । ସେପରି ପୁରାଣରେ ସତ୍‌ପୁରୁଷମାନେ କହିଛନ୍ତି, ଏହା ବହୁତ ସୁନ୍ଦର କଥା ଅଟେ । କ'ଣ ହତ୍ୟାକାରୀ ହତ୍ୟା କରିବା ପରେ ଯଦି ପଶ୍ଚାତାପ କରେ ତେବେ ତା'କୁ କ୍ଷମା ମିଳି ପାରିବ ?

**ଦାଦାଶ୍ରୀ :** ହତ୍ୟାକାରୀ ହତ୍ୟା କରିବା ପରେ ଯଦି ଖୁସି ହୁଏ ତେବେ, ତା'ର ଯେଉଁ ଦଣ୍ଡ ବାର ମାସର ହେବାର ଥିଲା, ତାହା ତିନି ବର୍ଷର ହୋଇଯାଏ, ଆଉ

ହତ୍ୟାକାରୀ ହତ୍ୟା କରିବା ପରେ ଯଦି ପଶ୍ଚାତାପ କରେ ତେବେ ବାର ମାସର ଯେଉଁ ଦଣ୍ଡ ହେବାକୁ ଥାଏ, ତାହା ଛଅ ମାସର ହୋଇଯାଏ । କୌଣସି ବି ଖରାପ କାର୍ଯ୍ୟ କରି ଯଦି ଖୁସି ହେବ ତେବେ ସେହି କାର୍ଯ୍ୟ ତିନି ଗୁଣା ଫଳ ଦେବ । କାର୍ଯ୍ୟ କରିବା ପରେ ଯଦି ପଶ୍ଚାତାପ କରିବ ଯେ ଭୁଲ କଲି, ତେବେ ଦଣ୍ଡ କମ ହୋଇଯିବ ।

## ଜ୍ଞାନୀଙ୍କ ଜ୍ଞାନରୁ, ଛୁଟକାରା କର୍ମରୁ !

**ପ୍ରଶ୍ନକର୍ତ୍ତା :** ଅନେକ ଥର ବ୍ୟବହାରରେ ଅଲଗା-ଅଲଗା ପ୍ରକାର କର୍ମ କରିବାକୁ ପଡ଼େ, ଯାହାକୁ ଖରାପ କର୍ମ ଅଥବା ପାପ କର୍ମ କୁହନ୍ତି । ତେବେ ସେହି ପାପ କର୍ମରୁ କିପରି ବଞ୍ଚି ହେବ?

**ଦାଦାଶ୍ରୀ :** ପାପକର୍ମ ସାମନାରେ ତା'କୁ ଯେତିକି ଜ୍ଞାନ ଥିବ, ସେହି ଜ୍ଞାନ ହେଲ୍ପ କରିବ । ଆମକୁ ଏଠାରୁ ଷ୍ଟେସନ୍ ଯିବାକୁ ଥିବ, ତେବେ ଷ୍ଟେସନ୍ ଯିବାର ଜ୍ଞାନ ଯଦି ଆମକୁ ଥିବ ତେବେ ସେ ଆମକୁ ପହଞ୍ଚାଇବ । ପାପ କର୍ମରୁ କିପରି ବଞ୍ଚି ହେବ? ଅର୍ଥାତ ଜ୍ଞାନ ଯେତିକି ଥିବ ଏଥିରେ, ପୁସ୍ତକରେ ଅବା ଅନ୍ୟ କାହା ପାଖରେ ଜ୍ଞାନ ନ ଥାଏ । ତାହା ତ ବ୍ୟବହାରିକ ଜ୍ଞାନ ଥାଏ । 'ନିଶ୍ଚୟ' ଜ୍ଞାନ କେବଳ ଜ୍ଞାନୀଙ୍କ ପାଖରେ ଥାଏ । ପୁସ୍ତକରେ ସେ 'ନିଶ୍ଚୟ' ଜ୍ଞାନ ନ ଥାଏ । ଜ୍ଞାନୀଙ୍କ ହୃଦୟରେ ଲୁଚି ରହି ଥାଏ । ସେ 'ନିଶ୍ଚୟ' ଜ୍ଞାନ ଯେବେ ଆମେ ବାଣୀ ରୂପେ ଶୁଣିବା ସେତେବେଳେ ଆମର ଛୁଟକାରା ହେବ । ନହେଲେ ପୁସ୍ତକରେ ବ୍ୟବହାରିକ ଜ୍ଞାନ ଥାଏ, ତାହା ମଧ୍ୟ ଅନେକ ସ୍ୱଷ୍ଟିକରଣ ଦେଇ ପାରିବ । ତାହା ଦ୍ୱାରା ବୁଦ୍ଧି ବଢ଼େ । ମତିଜ୍ଞାନ ବଢ଼ିଚାଲେ । ଶ୍ରୁତଜ୍ଞାନରୁ ମତିଜ୍ଞାନ ବଢ଼େ, ଏବଂ ପାପରୁ କିପରି ମୁକୁଳିବା ଏହାର ସମାଧାନ ମତିଜ୍ଞାନ ଆଣେ । ନହେଲେ, ଅନ୍ୟ କୌଣସି ଉପାୟ ନାହିଁ, ଆଉ ନହେଲେ ଯଦି ପ୍ରତିକ୍ରମଣ କରିବ ତେବେ ମୁକୁଳିବ । କିନ୍ତୁ ପ୍ରତିକ୍ରମଣ କିପରି ହେବା ଉଚିତ ? 'ଶୁଟ୍ ଅନ୍ ଶାଇଟ୍' ହେବା ଉଚିତ । ଦୋଷ ହେବା ମାତ୍ରେ ଯଦି ପ୍ରତିକ୍ରମଣ କରାଯିବ, ତେବେ ଛୁଟକାରା ହେବ ।

## କର ଏହି ବିଧି, ପାପୋଦୟ ସମୟରେ !

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରିବା ଦ୍ୱାରା ହୁଏତ ନୂଆ ପାପର ବନ୍ଧନ ନ ହୋଇପାରେ, କିନ୍ତୁ ପୁରୁଣା ପାପ ତ ଭୋଗିବାକୁ ପଡ଼ିବ ନା ?

**ଦାଦାଶ୍ରୀ :** ପ୍ରତିକ୍ରମଣ ଦ୍ୱାରା ନୂଆ ପାପ ହେବ ନାହିଁ, ଏପରି ତୁମର କହିବା ଠିକ ଅଟେ ଏବଂ ପୁରୁଣା ପାପ ତ ଭୋଗିବାକୁ ହିଁ ପଡ଼ିବ । ଏବେ ସେହି ଭୋଗିବା କମ ହୋଇପାରେ, ସେଥିପାଇଁ ପୁଣି ମୁଁ ମାର୍ଗ ବତାଇଛି ଯେ ତିନି ମନ୍ତ୍ର ସାଥିରେ ବୋଲିବ, ତେବେ ମଧ୍ୟ ଭୋଗିବାର ଫଳ ହାଲୁକା ହୋଇଯିବ । କେଉଁ ବ୍ୟକ୍ତିର ମୁଣ୍ଡରେ ଦେଢ଼ ମହଣର ବୋଝ ଥିବ ଏବଂ ବିଚରା ଏମିତି ବିରକ୍ତ ହୋଇଯାଇଥିବ, କିନ୍ତୁ ହଠାତ ସେ କିଛି ଦେଖିଲା ଏବଂ ଦୃଷ୍ଟି ସେଠାକୁ ଗଲା ତେବେ ସେ ନିଜ ଦୁଃଖ ଭୁଲିଯିବ, ବୋଝ ଅଛି ତଥାପି ତା'କୁ ଦୁଃଖ କମ ଲାଗେ । ସେହିପରି ଏହି ଯେଉଁ ତ୍ରିମନ୍ତ୍ର ଅଛି, ତାହା ବୋଲିବା ଦ୍ୱାରା ବୋଝ ଲାଗିବ ହିଁ ନାହିଁ ।

ମନ୍ତ୍ରର ପ୍ରକୃତ ଅର୍ଥ କଣ ? ମନ୍ତ୍ର ଅର୍ଥାତ ମନକୁ ଶାନ୍ତ ରଖେ ତାହା । ଭଗବାନଙ୍କ ଭକ୍ତି କରୁ କରୁ ସଂସାରରେ ବିଘ୍ନ ନ ଆସୁ, ସେଥିପାଇଁ ଭଗବାନ ତିନୋଟି ମନ୍ତ୍ର ଦେଇଛନ୍ତି । (୧) ନବକାର ମନ୍ତ୍ର (୨) ଓଁ ନମୋ ଭଗବତେ ବାସୁଦେବାୟ (୩) ଓଁ ନମଃ ଶିବାୟ । ଏହି ମନ୍ତ୍ର ହେଲ୍ପିଙ୍ଗ୍ ଅଟେ । ତୁମେ କେବେ ତ୍ରିମନ୍ତ୍ର ବୋଲିଥିଲ ? ଦିନେ ବି କେବେ ତ୍ରିମନ୍ତ୍ର ବୋଲିଥିଲ ? ତାହା ଯଦି ଟିକିଏ ଅଧିକ ବୋଲିବ ତେବେ ପୁଣି ସବୁ ହାଲୁକା ହୋଇଯିବ ଏବଂ ତୁମକୁ ଯଦି ଭୟ ଲାଗୁଥିବ ତେବେ ତାହା ମଧ୍ୟ ବନ୍ଦ ହୋଇଯିବ ।

ପୁଣ୍ୟର ଉଦୟ କି କାମ କରେ ? ନିଜର ମନ ମୁତାବକ ସବୁ ହେବାକୁ ଦିଏ । ପାପର ଉଦୟ କ'ଣ କରେ ? ଆମର ସ୍ଥିର କରାଯାଇଥିବା ସବୁ ଓଲଟା କରିଦିଏ ।

## ପାପ ଧୋଇଗଲା ତାହାର ପ୍ରତୀତି

**ପ୍ରଶ୍ନକର୍ତ୍ତା :** ଆମ ପାପକର୍ମ ପାଇଁ ଏବେ କିପରି ଧୋଇବା ଉଚିତ ?

**ଦାଦାଶ୍ରୀ :** ପାପକର୍ମର ତ ଯେତେ ଦାଗ ପଡ଼ିଛି ସେତେ ପ୍ରତିକ୍ରମଣ କରିବା ଉଚିତ, ସେ ଦାଗ ଯଦି ଗାଢ଼ ହୋଇଥିବ ତେବେ ବାରମ୍ବାର ଧୋଇବା ଉଚିତ, ବାରମ୍ବାର ଧୋଇବା ଉଚିତ ।

**ପ୍ରଶ୍ନକର୍ତ୍ତା :** ସେ ଦାଗ ଚାଲିଗଲା କି ନାହିଁ, ତାହା କିପରି ଜଣା ପଡ଼ିବ ?

**ଦାଦାଶ୍ରୀ :** ତାହା ତ ଭିତରେ ମନ ସ୍ୱଚ୍ଛ ହୋଇଯିବ ନା, ତେବେ ଜଣା ପଡ଼ିଯିବ । ଚେହେରାରେ ମସ୍ତି ଖେଳିଯିବ । ତୁମକୁ ଜଣା ପଡ଼ିବ ନାହିଁ ଯେ ଦାଗ ହିଁ

ଚାଲିଗଲା ? କାହିଁକି ଜଣା ପଡ଼ିବ ନାହିଁ ? କ'ଣ ଅସୁବିଧା ହେଉଛି ? ଆଉ ଯଦି ଦାଗ ନ ଯାଏ ତେବେ ମଧ୍ୟ ଆମକୁ ଅସୁବିଧା ନାହିଁ । ତୁ ପ୍ରତିକ୍ରମଣ କରିଚାଲ ! ତୁ ସାବୁନ ଘଷି ଚାଲ ! ପାପକୁ ତୁ ଚିହ୍ନିଛୁ ?

ସାମ୍ନାବାଲାକୁ ଦୁଃଖ ହୁଏ ତାହା ପାପ ଅଟେ, କୌଣସି ବି ଜୀବକୁ, ସେ ପୁଣି ମନୁଷ୍ୟ ହେଉ, ପଶୁପକ୍ଷୀ ହେଉ ଅବା ଗଛ ହେଉ । ଅଯଥାରେ ଯଦି ଗଛର ପତ୍ର ଛିଡ଼େଇ ଚାଲିବା ତେବେ ତା'କୁ ବି ଦୁଃଖ ହୁଏ, ଏଣୁ ତାହା ପାପ କୁହାଯାଏ । ଏଣୁ ଅଳ୍ପ ବି, କିଞ୍ଚିତ ମାତ୍ର ଦୁଃଖ ନ ହେଉ ଏପରି ହେବା ଉଚିତ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ମନୁଷ୍ୟ ନିଜ ସ୍ୱଭାବ ଅନୁସାରେ ଯଦି କରୁଥିବ ତେବେ ମଧ୍ୟ ସେଥିରେ ତା'କୁ ପୁଣ୍ୟ-ପାପ ଲାଗେ ?

**ଦାଦାଶ୍ରୀ :** ସାମ୍ନାବାଲାକୁ ଯଦି ଦୁଃଖ ହୁଏ ତେବେ ପାପ ଲାଗେ । ସେ ସ୍ୱଭାବ ଅନୁସାରେ କରେ, କିନ୍ତୁ ତା'କୁ ବୁଝିବା ଉଚିତ ଯେ ମୋ ସ୍ୱଭାବରୁ ସାମ୍ନାବାଲାକୁ ଦୁଃଖ ହେଉଛି । ସେଥିପାଇଁ ମୋତେ ତା'କୁ କ୍ଷମା ମାଗିନେବା ଉଚିତ ଯେ ମୋ ସ୍ୱଭାବ ତେଢ଼ା ଅଟେ ଏବଂ ତାହାଦ୍ୱାରା ତା'କୁ ଦୁଃଖ ହୋଇଛି, ସେଥିପାଇଁ କ୍ଷମା ମାଗୁଛି ।

ଆମେ ପ୍ରତିକ୍ରମଣ କରିବା ତେବେ ବହୁତ ଭଲ । ଆମ କପଡ଼ା ସଫା ହୋଇଯିବ ନା ? ଆମ କପଡ଼ାରେ ମଇଳା କାହିଁକି ରହିବାକୁ ଦେବା ? ଦାଦା ଏପରି ରାସ୍ତା ଦେଖାଇଛନ୍ତି ତେବେ କାହିଁକି ସଫା ନ କରିଦେବା ?

**ପ୍ରଶ୍ନକର୍ତ୍ତା :** ଅତିକ୍ରମଣ କେବେ ହୁଏ, କିଛି ପୂର୍ବଜନ୍ମର ହିସାବ ଥିବ ତେବେ ନା ?

**ଦାଦାଶ୍ରୀ :** ହଁ, ତେବେ ହେବ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ନିଜ ପାଇଁ ଯେବେ ପ୍ରତିକ୍ରମଣ କରୁ, ସେତେବେଳେ ପୂର୍ବର ସବୁ ଜନ୍ମର ପାପ ପାଇଁ ପ୍ରତିକ୍ରମଣ ହୁଏ କି ?

**ଦାଦାଶ୍ରୀ :** ସେ ହିସାବ ମୁଁ ଉଡ଼େଇ ଦିଏ । ମାନେ ଆମ ଲୋକେ 'ଶୁଟ୍ ଅନ୍ ଶାଇଟ୍' ପ୍ରତିକ୍ରମଣ କରନ୍ତି, ଯାହାଦ୍ୱାରା ନିଜ ଦୋଷ ତୁରନ୍ତ ନିର୍ମଳ ହୋଇଯାଏ ।

## ଚାଷର ପାପ ଧୋଇବାର ବିଧି

**ପ୍ରଶ୍ନକର୍ତ୍ତା :** ଆମେ ହେଲୁ ଚାଷୀ, ଏଣୁ ଯେତେବେଳେ ତମାଖୁ ଫସଲ କରୁ, ସେତେବେଳେ ଆମକୁ ପ୍ରତ୍ୟେକ ଚାରାର ଅଗ୍ରଭାଗ, ଅର୍ଥାତ ତାହାର ବେକ ଭାଙ୍ଗିବାକୁ ହିଁ ପଡ଼େ । ତାହାର ପାପ ତ ଲାଗିବ ନିଶ୍ଚିତ ନା? ତେବେ ଏହି ପାପର ନିବାରଣ କିପରି କରିବା ଉଚିତ?

**ଦାଦାଶ୍ରୀ :** ତାହା ତ ଭିତରେ ମନରେ ଏପରି ହେବା ଉଚିତ ଯେ କିପରି ଏହି କାମ, କେଉଁଠୁ ମୋ ଭାଗରେ ଆସିଲା? ବାସ୍ ଏତିକି । ଚାରାର ଅଗ୍ରଭାଗ ବାହାର କରିଦେବ, କିନ୍ତୁ ମନରେ ପଶ୍ଚାତାପ ହେବା ଉଚିତ ଯେ ଏପରି କାମ ମୋ ଭାଗରେ କେଉଁଠୁ ଆସିଲା । ଏପରି କରିବା ଉଚିତ ନୁହେଁ, ମନରେ ଏପରି ହେବା ଉଚିତ, ବାସ୍ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏହା ପାପ ତ ହେଲା ନା?

**ଦାଦାଶ୍ରୀ :** ତାହା ତ ହେଲା । ତାହା ତୁମକୁ ଦେଖିବାର ନାହିଁ । ଯାହା ହୋଇ ଚାଲିଛି, ସେହି ପାପକୁ ଦେଖିବାର ନାହିଁ । ଏହା ନ ହେବା ଉଚିତ, ଏପରି ତୁମକୁ ସ୍ଥିର କରିବାର ଅଛି । 'ନିଶ୍ଚୟ' କରିବା ଉଚିତ । ଏହି କାମ କେଉଁଠୁ ମିଳିଲା? ଅନ୍ୟ ଭଲ କାମ ଯଦି ମିଳିଥାନ୍ତା ତେବେ ଆମେ ଏପରି କରି ନଥାନ୍ତେ । ଯେପର୍ଯ୍ୟନ୍ତ ଏହା ଜାଣି ନଥିବ, ସେପର୍ଯ୍ୟନ୍ତ ପଶ୍ଚାତାପ ହୁଏ ନାହିଁ । ଖୁସି ହୋଇ ଚାରାକୁ ଫୋପାଡ଼ି ଦିଏ । ମୋ କହିବା ଅନୁସାରେ କର । ପୁଣି ତୁମର ସବୁ ଦାୟିତ୍ୱ ମୋର । ଚାରା ଫୋପାଡ଼ି ଦିଅ ସେଥିରେ ଅସୁବିଧା ନାହିଁ, ପଶ୍ଚାତାପ ହେବା ଉଚିତ ଯେ ଏହା ମୋ ଭାଗରେ କେଉଁଠୁ ଆସିଲା?

**ପ୍ରଶ୍ନକର୍ତ୍ତା :** କପାଗଛରେ ଔଷଧ ଛିଞ୍ଚିବାକୁ ପଡ଼େ, ତେବେ କ'ଣ କରିବୁ? ସେଥିରେ ହିଂସା ତ ହେଲା ନା?

**ଦାଦାଶ୍ରୀ :** ଅନିବାର୍ଯ୍ୟ ରୂପେ ଯେଉଁ ଯେଉଁ କାର୍ଯ୍ୟ କରିବାକୁ ପଡ଼େ, ତାହା ପ୍ରତିକ୍ରମଣ କରିବାର ସର୍ତ୍ତରେ କରିବା ଉଚିତ । ଏହି ସଂସାର ବ୍ୟବହାରରେ କିପରି ଚାଲିବା ଉଚିତ, ତାହା ତୁମକୁ ଆସୁ ନାହିଁ । ତାହା ମୁଁ ତୁମକୁ ଶିଖାଉଛି, ଯାହାଦ୍ୱାରା ନୂଆ ପାପର ବନ୍ଧନ ହେବ ନାହିଁ ।

ଚାଷବାସରେ ଜୀବଜନ୍ତୁ ମରନ୍ତି, ତାହାର ଦୋଷ ତ ଲାଗିବ ନା ? ସେଥିପାଇଁ ଚାଷବାସବାଲାଙ୍କୁ ପ୍ରତିଦିନ ପାଞ୍ଚ-ଦଶ ମିନିଟ ଭଗବାନଙ୍କ ଠାରେ ପ୍ରାର୍ଥନା କରିବା ଉଚିତ ଯେ ଏହି ଦୋଷ ହେଲା ସେଥିପାଇଁ କ୍ଷମା ମାଗୁଛି । ଯଦି ଚାଷୀ ହୋଇଥିବ ତେବେ ତା'କୁ କହେ ଯେ ତୁ ଏହି କାମ କରୁଛୁ, ସେଥିରେ ଜୀବ ମରୁଛନ୍ତି । ତାହାର ଏହିପରି ପ୍ରତିକ୍ରମଣ କରିବୁ ।

## ଶହେ ପ୍ରତିଶତ ଧୋଇଯିବ ପାପ

**ପ୍ରଶ୍ନକର୍ତ୍ତା :** ଅର୍ଥାତ କ୍ଷମା ମାଗିବା ଦ୍ୱାରା ଆମ ପାପର ନିବାରଣ ହୋଇଯାଏ କି ?

**ଦାଦାଶ୍ରୀ :** ତାହାଦ୍ୱାରା ହିଁ ପାପର ନିବାରଣ ହୁଏ ଅନ୍ୟ କୌଣସି ଅଲଗା ରାସ୍ତା ହିଁ ନାହିଁ ।

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ବାରମ୍ବାର କ୍ଷମା ମାଗିବୁ ଏବଂ ବାରମ୍ବାର ପାପ କରି ଚାଲିବୁ ?

**ଦାଦାଶ୍ରୀ :** ବାରମ୍ବାର କ୍ଷମା ମାଗିବା ପାଇଁ ଛାଡ଼ ଅଛି । ବାରମ୍ବାର କ୍ଷମା ମାଗିବାକୁ ପଡ଼ିବ । ହଁ, ଶହେ ପ୍ରତିଶତ ମୁକୁଳିବାର ରାସ୍ତା ଅଟେ ଏହା ! କ୍ଷମା ମାଗିବା ଛାଡ଼ି ଅନ୍ୟ କୌଣସି ରାସ୍ତାରେ ଏହି ଦୁନିଆରୁ ମୁକୁଳି ହେବ ନାହିଁ । ପ୍ରତିକ୍ରମଣ ଦ୍ୱାରା ସବୁ ପାପ ଧୋଇଯାଏ ।

**ପ୍ରଶ୍ନକର୍ତ୍ତା :** ପ୍ରତିକ୍ରମଣ କରିବା ଦ୍ୱାରା ପାପ ନାଶ ହୁଏ, ତାହା ପଛର ସାଇନ୍ସ କ'ଣ ?

**ଦାଦାଶ୍ରୀ :** ଅତିକ୍ରମଣ ଦ୍ୱାରା ପାପ ହୁଏ ଏବଂ ପ୍ରତିକ୍ରମଣ ଦ୍ୱାରା ପାପର ନାଶ ହୁଏ । ଫେରି ଆସିବା ଦ୍ୱାରା ପାପର ନାଶ ହୁଏ ।

**ପ୍ରଶ୍ନକର୍ତ୍ତା :** ତେବେ ପୁଣି କର୍ମର ନିୟମ କେଉଁଠି ଲାଗୁ ହେଲା ? ଆମେ କ୍ଷମା ମାଗିବୁ ଏବଂ କର୍ମରୁ ମୁକୁଳିଯିବୁ ତେବେ କର୍ମର ନିୟମ ରହିଲା ନାହିଁ ନା ?

**ଦାଦାଶ୍ରୀ :** ଏହା ହିଁ କର୍ମର ନିୟମ ! କ୍ଷମା ମାଗିବା, ତାହା ହିଁ କର୍ମର ନିୟମ !!

**ପ୍ରଶ୍ନକର୍ତ୍ତା :** ତେବେ ତ ସମସ୍ତେ ପାପ କରିଚାଲିବେ ଏବଂ କ୍ଷମା ମାଗିଚାଲିବେ ।

**ଦାଦାଶ୍ରୀ :** ହଁ, ପାପ କରିଚାଲିବ ଏବଂ କ୍ଷମା ମାଗିଚାଲିବ, ଏହା ହିଁ ଭଗବାନ କହିଛନ୍ତି ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ହୃଦୟର ସହ କ୍ଷମା ମାଗିବାର ଅଛି ନା ?

**ଦାଦାଶ୍ରୀ :** କ୍ଷମା ମାଗିବା ବାଲା ହୃଦୟର ସହ ହିଁ କ୍ଷମା ମାଗେ ଆଉ ଯଦି ମିଛରେ ମାଗିବ ତେବେ ମଧ୍ୟ ଚଳେଇ ନିଆଯିବ । ତେବେ ବି କ୍ଷମା ମାଗ ।

**ପ୍ରଶ୍ନକର୍ତ୍ତା :** ତେବେ ତ ପୁଣି ତା'କୁ ଅଭ୍ୟାସ ପଡ଼ିଯିବ ?

**ଦାଦାଶ୍ରୀ :** ଅଭ୍ୟାସ ପଡ଼ିଯିବ ତେବେ ପଛେ ପଡ଼ିଯାଉ କିନ୍ତୁ କ୍ଷମା ମାଗ । କ୍ଷମା ନ ମାଗିଲେ ତ ଆସିଲା ଜାଣ ! କ୍ଷମାର ଅର୍ଥ କ'ଣ ? ତାହା ପ୍ରତିକ୍ରମଣ କୁହାଯାଏ ଆଉ ଦୋଷକୁ କ'ଣ କହନ୍ତି ? ଅତିକ୍ରମଣ ।

କର୍ମର ନିୟମ କ'ଣ ? ଯଦି ଅତିକ୍ରମଣ କଲ ତେବେ ତାହାର ପ୍ରତିକ୍ରମଣ କର । ବୁଝା ପଡ଼ିଲା ତୁମକୁ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ଏଣୁ କ୍ଷମା ଅବଶ୍ୟ ମାଗ । ଆଉ ଏ ବୁଦ୍ଧି, ଆବଶ୍ୟକତାଠାରୁ ଅଧିକ ବୁଦ୍ଧିମତାର କଥା ଛାଡ଼ି ଦିଅ ! କେହି ଭୁଲ କରୁଥିବ ଏବଂ କ୍ଷମା ମାଗୁଥିବ ତେବେ ମାଗିବାକୁ ଦିଅ ନା ! ଦିସ୍ ଇଜ୍ କମ୍ପ୍ଲିଟ୍ ଲ' (ଏହା ହେଉଛି ପୂର୍ଣ୍ଣ ନିୟମ) ।

## ପଶ୍ଚାତାପର ସର୍ବଶ୍ରେଷ୍ଠ ସାବୁନ

**ପ୍ରଶ୍ନକର୍ତ୍ତା :** ପାପ ଦୂର କରିବା ପାଇଁ ପ୍ରାୟଶ୍ଚିତକୁ ଛାଡ଼ି ଅନ୍ୟ କୌଣସି ଉପାୟ ଅଛି କି ?

**ଦାଦାଶ୍ରୀ :** ପାପ ଦୂର କରିବା ପାଇଁ ପ୍ରାୟଶ୍ଚିତକୁ ଛାଡ଼ି ଅନ୍ୟ କୌଣସି ଉପାୟ ନାହିଁ । ଏ ସବୁ ପାପ, ତାହା କ'ଣ ? ଏ ପାପ ଯେଉଁ ଅଛି, ତାହା କାହାକୁ ପାପ କହୁ ଆମେ ? ତେବେ କହିବା ଯେ, ଏସବୁ ତୁମେ ଯାହା କରୁଛ, ତାହା କରିବାରେ ଅସୁବିଧା ନାହିଁ । ଏମାନେ ସମସ୍ତେ ବସିଛନ୍ତି । ଏବେ କାହାକୁ ଅସୁବିଧା ନାହିଁ । ସେଥିରୁ କେହି ଜଣେ ବ୍ୟକ୍ତି ଯଦି କୁହେ ଯେ, 'କାହିଁକି ତୁମେ ବିଳମ୍ବରେ

ଆସୁଛ ?' ଆମକୁ ଏପରି କୁହେ, ତେବେ ସେ ଅତିକ୍ରମଣ କଲା, ଏପରି କୁହାଯିବ । ଯାହା ଲୋକଙ୍କୁ ପସନ୍ଦ ଆସେ ନାହିଁ ଯେ ଏପରି କାହିଁକି କହୁଛି ? ତାହା ଅତିକ୍ରମଣ କଲା କୁହାଯିବ । ସେ ଅତିକ୍ରମଣ କରୁଛି, ସେଥିପାଇଁ ଭଗବାନ ପ୍ରତିକ୍ରମଣ କରିବାକୁ କହିଛନ୍ତି । ଅର୍ଥାତ କେତେ ଜିନିଷର ପଶ୍ଚାତାପ କରିବ ? ଯେ ଯାହାଦ୍ୱାରା ଲୋକଙ୍କୁ ଦୁଃଖ ହୁଏ, ଏପରି କଥା ପାଇଁ ପଶ୍ଚାତାପ କରିବ । କ'ଣ କହିଛନ୍ତି ? ଯାହା ପସନ୍ଦ ଆସେ ତାହା ପାଇଁ ନୁହେଁ । ମାନେ ପଶ୍ଚାତାପ କରିବାକୁ ପଡ଼ିବ । ତୁ କରୁଛୁ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ଦାଦା ଭଗବାନଙ୍କ ନାମରେ ପ୍ରତିକ୍ରମଣ କରୁଛୁ କି ନାହିଁ ?

**ପ୍ରଶ୍ନକର୍ତ୍ତା :** ସେ ପୁସ୍ତକ ଦେଇଛ ନା ? ସେଥିରେ ଯେପରି କୁହା ହୋଇଛି ସେପରି କରୁଛି । ନଅ କଲମ କରୁଛି ।

**ଦାଦାଶ୍ରୀ :** କରୁଛୁ ନା ? ତାହା ପ୍ରତିକ୍ରମଣ ହିଁ ଅଟେ । ସବୁଠୁ ବଡ଼ ପ୍ରତିକ୍ରମଣ, ଦାଦା ଭଗବାନଙ୍କ ଯେଉଁ ନଅ କଲମ ଅଛି, ତାହା ପୁରା ଜଗତ ପାଇଁ କଲ୍ୟାଣକାରୀ ପ୍ରତିକ୍ରମଣ ଅଟେ ।

**ପ୍ରଶ୍ନକର୍ତ୍ତା :** ଏହା ସତ କଥା ଯେ ପଶ୍ଚାତାପର ଘଡ଼ାରେ ପଛେ ଯେଭଳି ପାପ ହୋଇଥାଉ ତେବେ ମଧ୍ୟ....

**ଦାଦାଶ୍ରୀ :** ହାଲୁକା ହୋଇଯାଏ, ପଶ୍ଚାତାପ କାରଣରୁ ।

**ପ୍ରଶ୍ନକର୍ତ୍ତା :** ପୂର୍ଣ୍ଣରୂପେ ଜଳି ପାଉଁଶ ହୋଇଯାଏ ନାହିଁ ?

**ଦାଦାଶ୍ରୀ :** ପୂର୍ଣ୍ଣରୂପେ ଜଳି ବି ଯାଏ । ଅନେକ ପାପ ତ ଜଳି ବି ଯାଏ, ବିଲୟ ହୋଇଯାଏ । ପଶ୍ଚାତାପର ସାବୁନ ଏପରି ଅଟେ ଯେ ଅଧିକାଂଶ କପଡ଼ା ଉପରେ କାମ କରେ ।

**ପ୍ରଶ୍ନକର୍ତ୍ତା :** ଆଉ ସେଥିରେ ଯଦି ଆପଣଙ୍କ ସାକ୍ଷୀରେ କରୁ, ତେବେ ପୁଣି କ'ଣ ବାକି ରହିଲା ?

**ଦାଦାଶ୍ରୀ :** କଲ୍ୟାଣ ହୋଇଯିବ । ସେଥିପାଇଁ ପଶ୍ଚାତାପର ସାବୁନ ପରି ଦୁନିଆରେ ଅନ୍ୟ କୌଣସି ସାବୁନ ନାହିଁ ।

## ପାପ-ପୁଣ୍ୟରୁ ନାହିଁ ନିବୃତ୍ତି

**ପ୍ରଶ୍ନକର୍ତ୍ତା :** ସବୁ ସାଧାରଣ ମନୁଷ୍ୟ ଜାଣନ୍ତି ଯେ ପାପ କ'ଣ ଏବଂ ପୁଣ୍ୟ କ'ଣ, ତଥାପି ସେଥିରୁ ନିବୃତ୍ତ କାହିଁକି ହୋଇପାରନ୍ତି ନାହିଁ ?

**ଦାଦାଶ୍ରୀ :** ହଁ, ଏହି ପ୍ରଶ୍ନ ଦୁର୍ଯ୍ୟୋଧନ କୃଷ୍ଣ ଭଗବାନଙ୍କୁ କରିଥିଲା ଯେ ପାପକୁ ଜାଣିଛି ଏବଂ ପୁଣ୍ୟକୁ ମଧ୍ୟ ଜାଣିଛି ଅର୍ଥାତ ଅଧର୍ମକୁ ଜାଣିଛି ଏବଂ ଧର୍ମକୁ ମଧ୍ୟ ଜାଣିଛି, ପରନ୍ତୁ ଅଧର୍ମରୁ ନିବୃତ୍ତି ହେଉ ନାହିଁ ଏବଂ ଧର୍ମରେ ପ୍ରବୃତ୍ତି ହେଉ ନାହିଁ ।

**ପ୍ରଶ୍ନକର୍ତ୍ତା :** ତାହା କାହିଁକି ହୁଏ ନାହିଁ ?

**ଦାଦାଶ୍ରୀ :** ସେ ସେହି ଅଧର୍ମକୁ ଜାଣି ହିଁ ନାହିଁ । ପ୍ରଥମେ ଜାଣିବା ଉଚିତ ଯେ, 'ମୁଁ କିଏ ?' ଏ ସବୁ କ'ଣ ପାଇଁ ଅଛି ? କ'ଣ ପାଇଁ ଏ ଭାଇ ମୋ ଉପରେ ଫଣା ଟେକୁଛି, ଏବଂ ମୋତେ ଅଲଗା ଭାଇ କାହିଁକି ମିଳିଲା ନାହିଁ ? ଏ ପ୍ରତିଦିନ ଗାଳି ଶୁଣାଏ, ଏଭଳି ଭାଇ କାହିଁକି ମିଳିଲା ? ତା'କୁ ତ ବହୁତ ଭଲ ଭାଇ ମିଳିଛି, ଏସବୁ ପଛରେ କାରଣ କ'ଣ ? ସେ ସବୁ ବୁଝିବାକୁ ପଡ଼ିବ ନାହିଁ ?

**ପ୍ରଶ୍ନକର୍ତ୍ତା :** ତାହା କିପରି ବୁଝିବା ଉଚିତ ?

**ଦାଦାଶ୍ରୀ :** ତାହା ପୂର୍ବଜନ୍ମର ନିଜ କର୍ମର ହିସାବ ଅଟେ, କୌଣସି ଭଗବାନ ଏଥିରେ ହାତ ମାରି ନାହାନ୍ତି । ଏ ସବୁ ଲାଭ-କ୍ଷତି ପ୍ରତ୍ୟେକଙ୍କର କର୍ମର ହିସାବ ଅଟେ । ସେଥିରେ ଅହଙ୍କାର କରେ, ସେଥିପାଇଁ ନିରୋଳା ପାପ-ପୁଣ୍ୟ ବନ୍ଧା ହୁଏ । ତାହାକୁ ପୁଣି ଥରେ ଭୋଗିବା ପାଇଁ ଯିବାକୁ ପଡ଼େ । ସେଥିପାଇଁ ଏହି ସବୁ ଗତିରେ ଭଟକିବାକୁ ପଡୁଛି । ଜେଲ୍ ଅଟେ ସବୁ । ସେ ଜେଲ୍ ଭୋଗିସାରି ଫେରି ଆସେ ଏବଂ ପୁଣି ଯେମିତି ଥିଲା ସେମିତି । ପୁଣି ପରେ ଯଦି ଅହଙ୍କାର ନ କରେ ତେବେ ମୁକ୍ତି ମିଳିବ । ସେଥିପାଇଁ ଯଦି ମୋକ୍ଷରେ ଯିବାର ଅଛି ତେବେ ମୁକୁଳି ଯାଅ । ସେଥିରେ ଯଦି 'ମୁଁ କିଏ' ର ସନ୍ଧାନ କରେ ଏବଂ ତାହା ଜାଣେ ତେବେ ମୁକ୍ତି ମିଳିବ ।

### ଲାଭ-କ୍ଷତିର ଆଧାର ?

ପାଞ୍ଚ ଇନ୍ଦ୍ରିୟ ଦ୍ୱାରା ଯାହା-ଯାହା ଅନୁଭବରେ ଆସେ ତାହା ସବୁ 'ଡିସ୍‌ଚାର୍ଜ' ଅଟେ । ଏହା ତ ପୁଣ୍ୟର ଆଧାରରେ ନିଜ ଧାରଣା ଅନୁସାରେ ହୁଏ ସେତେବେଳେ ଅହଙ୍କାର କରେ ଯେ 'ମୁଁ କଲି' ଏବଂ ପୁଣି ଯେବେ ପାପର ଉଦୟ ହୁଏ ଏବଂ କ୍ଷତି

ହୁଏ, ସେତେବେଳେ 'ଭଗବାନ କଲା' କୁହନ୍ତି ! ନହେଲେ କୁହନ୍ତି ଯେ ମୋ ଗ୍ରହ ଖରାପ ଅଛି !!! ଆଉ କମାଇ, ତାହା ତ ସହଜ କମାଇ ଅଟେ । କୌଣସି ମନୁଷ୍ୟ କମାଇ ପାରିବ ନାହିଁ । ଯଦି ପରିଶ୍ରମ ଦ୍ୱାରା କମାଇ ହୋଇ ପାରୁଥାନ୍ତା ତେବେ ମଜୁରିଆ ହିଁ କମାନ୍ତେ ! ଏହା ତ ତୁମ ପୁଣ୍ୟ କମାଉଛି ଆଉ ନିଜେ ଅହଙ୍କାର କରୁଛ, 'ମୁଁ କମେଇଲି, ମୁଁ କମେଇଲି ।' ସେ ଦଶ ଲକ୍ଷ କମାଏ ସେପର୍ଯ୍ୟନ୍ତ ଏମିତି ଛାତି ଫୁଲେଇ ବୁଲୁଥାଏ ଆଉ ପାଞ୍ଚ ଲକ୍ଷ କ୍ଷତି ହେଲା, ସେତେବେଳେ ଯଦି ଆମେ ପଚାରିବା, 'ସେଠ୍ କାହିଁକି ଏପରି ?' ତେବେ କହିବ, 'ଭଗବାନ ରୁଷିଛନ୍ତି ।' ଦେଖ ତା'କୁ କେହି ମିଳିଲେ ନାହିଁ ଆଉ । ଆଉ କେହି ମିଳିଲେ ନାହିଁ । ବିଚରା ଭଗବାନଙ୍କ ମୁଣ୍ଡରେ ଲଦୁଛି । ତୁମ ଇଚ୍ଛାନୁସାରେ(ଧାରଣା ଅନୁସାରେ) ହିଁ ହେବା, ତାହା ପୁଣ୍ୟର ଫଳ ଅଟେ ଏବଂ ତାହାଠୁ ଓଲଟା ହେବା, ତାହା ସବୁ ପାପର ଫଳ ଅଟେ । ନିଜ ଧାରଣା ଚାଲେ ସେପରି ନୁହେଁ ଏହି ଜଗତ । ନିଜ ଧାରଣା ଅନୁସାରେ ଫଳ ଆସେ ତେବେ ତାହା ପୁଣ୍ୟର ପ୍ରାରବ୍ଧ ଅଟେ, ଧାରଣା ଅନୁସାରେ ଆସେ ନାହିଁ ତେବେ ପାପର ପ୍ରାରବ୍ଧ ଅଟେ ।

## ଅହଙ୍କାର ଦ୍ୱାରା ପୁଣ୍ୟ-ପାପର ବନ୍ଧନ

**ପ୍ରଶ୍ନକର୍ତ୍ତା :** ଯଦି ମୋତେ ଅହଙ୍କାର ବି ନଥିବ ଏବଂ ମମତା ବି ନଥିବ, ଅଥବା ଉଭୟରୁ ଗୋଟିଏ ନଥିବ ତେବେ ମୁଁ କେଉଁ କର୍ମ କରିବି ?

**ଦାଦାଶ୍ରୀ :** ଅହଙ୍କାର ଅଛି ତେବେ ପାପ-ପୁଣ୍ୟ ହୁଏ । ଅହଙ୍କାର ଗଲା ମାନେ ପାପ-ପୁଣ୍ୟ ଗଲେ ଏବଂ ଲୋକେ ଅହଙ୍କାର କମ କରନ୍ତି ନା, ତାହାର ଫଳ ଭୌତିକ ସୁଖ ମିଳେ । ଅହଙ୍କାର କମ କଲା, ତାହାଦ୍ୱାରା କର୍ମ ବନ୍ଧନ ହେଲା । ତାହାର ଫଳ ଭୌତିକ ସୁଖ ମିଳେ । ଅହଙ୍କାର ଅଧିକ କଲା ତାହାର କର୍ମ ବନ୍ଧନ ହେଲା, ତାହାଦ୍ୱାରା ଭୌତିକ ଦୁଃଖ ଆସେ । ଅହଙ୍କାର କମ କରିବା ଦ୍ୱାରା କେଉଁଠି ଅହଙ୍କାର ଯାଏ ନାହିଁ, କିନ୍ତୁ ତାହା ଭୌତିକ ସୁଖ ଦେବ । ଯେଉଁଠି ଜ୍ଞାନୀ ଥିବେ ତେବେଯାଇ ଅହଙ୍କାର ଯାଏ, ନହେଲେ ଅହଙ୍କାର ଯାଏ ନାହିଁ ।

କିଛି ସୀମା ପର୍ଯ୍ୟନ୍ତ ହିଁ ଅହଙ୍କାର କମ ହୋଇପାରିବ, ତା'କୁ ସଂସାରରେ ଅସୁବିଧା ଆସେ ନାହିଁ । ଯଦି ମହାବୀର ଭଗବାନଙ୍କ ଆଜ୍ଞାରେ ରହେ, ତେବେ କିଛି ସୀମା ପର୍ଯ୍ୟନ୍ତ ଅହଙ୍କାର ନିଶ୍ଚିତ କମ ହୋଇପାରିବ କିନ୍ତୁ ନର୍ମାଲ୍ ରହେ । ନର୍ମାଲ୍

ଅହଙ୍କାର ରହେ ତେବେ ସଂସାରରେ କ୍ଲେଶ ହୁଏ ନାହିଁ । ଘରେ ସାମାନ୍ୟ କ୍ଲେଶ ଅଥବା ଅନ୍ତରକ୍ଲେଶ ହୁଏ ନାହିଁ । ସେପରି ଏବେ ବି ଆମ କ୍ରମିକ ମାର୍ଗରେ ଅଛି । ଏତିକି ବି ସେ କିଛି ଜଣଙ୍କୁ ହିଁ ଥିବ । କିଛି ଲୋକଙ୍କୁ କ୍ଲେଶ ହୁଏ ନାହିଁ, ଅନ୍ତରକ୍ଲେଶ ହୁଏ ନାହିଁ । କିନ୍ତୁ ସେହି ଅହଙ୍କାର ମଧ୍ୟ, ମୋକ୍ଷ ପ୍ରାପ୍ତ କରିବା ପାଇଁ ଖାଲି କରିବାକୁ ପଡ଼ିବ ।

ଆଉ ସେ ଅହଙ୍କାର ଯାଏ ଏବଂ 'ମୁଁ' ଯାହା ଅଟେ ତାହା ରିୟଲାଇଜ୍(ଭାନ୍) ହୁଏ ତେବେ ହୋଇଗଲା, ପରେ କର୍ମ ବନ୍ଧନ ହେବ ନାହିଁ । ପରେ ଜଜ୍ ହୋଇଥିଲେ ମଧ୍ୟ କର୍ମ ବନ୍ଧନ ହେବ ନାହିଁ । ଦାନେଶ୍ୱରୀ ହୋଇଥିଲେ ମଧ୍ୟ କର୍ମ ବନ୍ଧନ ହେବ ନାହିଁ । ସାଧୁ ହୋଇଥିଲେ ମଧ୍ୟ କର୍ମ ବନ୍ଧନ ହେବ ନାହିଁ ଏବଂ କଂସେଇ ହୋଇଥିଲେ ମଧ୍ୟ କର୍ମ ବନ୍ଧନ ହେବ ନାହିଁ । କ'ଣ କହିଲି ମୁଁ ? କାହିଁକି ଚମକି ପଡ଼ିଲ ? କଂସେଇ କହିଲି ସେଥିପାଇଁ ? କଂସେଇକୁ ଯଦି ପଚାରିବ ତେବେ ସେ କହିବ, ସାହେବ ମୋ ବାପ-ଜେଜ ଅମଳରୁ ଚାଲି ଆସୁଥିବା ବ୍ୟାପାର ଅଟେ !

**ପ୍ରଶ୍ନକର୍ତ୍ତା :** ଅହଙ୍କାର କରେ, ତେବେ ପୁଣ୍ୟ ଶବ୍ଦର ପ୍ରୟୋଗ ହୁଏ ଏବଂ ଅହଙ୍କାର କରେ, ତେବେ ପାପ ଶବ୍ଦର ପ୍ରୟୋଗ ହୁଏ ।

**ଦାଦାଶ୍ରୀ :** ତାହା ଠିକ କଥା । ଯଦି ଅହଙ୍କାର କରୁଥିବ ତେବେଯାଇ ପାପ-ପୁଣ୍ୟ ଶବ୍ଦର ପ୍ରୟୋଗ ହୁଏ । କିନ୍ତୁ ଅହଙ୍କାର ଏହାକୁ ଅଳ୍ପ ବଦଳାଇ ଦିଏ, ଅଲଗା କିଛି ବେଶୀ ପରିବର୍ତ୍ତନ ଏଥିରେ ହୁଏ ନାହିଁ । ଏହା ତ ହୋଇସାରିଛି । ଏହା ଇଟ୍ ହାପେନ୍ସ ଅଟେ ଏବଂ ପୁଣି ନୂଆ ହେଉଅଛି । ନୂଆ ଫିଲ୍ମ(ଟେପ୍) ହେଉଅଛି ଏବଂ ସେହି ପୁରୁଣା ଫିଲ୍ମ ଖୋଲୁଅଛି ।

ଯେପର୍ଯ୍ୟନ୍ତ ଅହଙ୍କାର ଅଛି ସେପର୍ଯ୍ୟନ୍ତ ନୂଆ ଚିତ୍ରଣ ନ କରି ରହେ ନାହିଁ ନା ! ଆମେ ପଛେ ଯେତେ ବୁଝାଇବା କିନ୍ତୁ ନୂଆ ଚିତ୍ରଣ ନ କରି ରହେ ନାହିଁ । ଅହଙ୍କାର କ'ଣ ନ କରେ ? ଅହଙ୍କାରରୁ ହିଁ ଏସବୁ ସୃଷ୍ଟି ହୋଇଛି । ଯଦି ଅହଙ୍କାର ବିଲୟ ହୋଇଯାଏ ତେବେ ମୁକ୍ତି ।

## ପୁଣ୍ୟ ଏବଂ ଆତ୍ମାର ସମ୍ବନ୍ଧ

**ପ୍ରଶ୍ନକର୍ତ୍ତା :** ଆତ୍ମାର ପୁଣ୍ୟ ସହ କିଛି ସମ୍ବନ୍ଧ ଅଛି ?

**ଦାଦାଶ୍ରୀ :** କୌଣସି ସମ୍ବନ୍ଧ ନାହିଁ । କିନ୍ତୁ ଯେପର୍ଯ୍ୟନ୍ତ ଏପରି ବିଲିଫ୍ ଅଛି ଯେ 'ଏହା ମୁଁ କରୁଅଛି', ସେପର୍ଯ୍ୟନ୍ତ ସମ୍ବନ୍ଧ ଅଛି । ଯେଉଁଠି 'ମୁଁ କରୁ ନାହିଁ' ଏହି ରାଇଟ୍ ବିଲିଫ୍ ବସିଯାଏ ତାହା ପରେ ପୁଣି ଆତ୍ମାର ଏବଂ ପୁଣ୍ୟର କୌଣସି ସମ୍ବନ୍ଧ ନାହିଁ । 'ମୁଁ ଦାନ କରୁଛି' 'ମୁଁ ଚୋରି କରୁଛି' ଉଭୟ ଇଗୋଇଜମ୍ ଅଟେ । ଯେଉଁଠି କିଛି ବି କରାଯାଏ, ସେଠି ପୁଣ୍ୟ ବନ୍ଧନ ହୁଏ ନହେଲେ ପାପ ବନ୍ଧନ ହୁଏ ।

## ଅଜ୍ଞାନତାରେ ବାନ୍ଧେ ପୁଣ୍ୟ-ପାପ, କର୍ମ

**ପ୍ରଶ୍ନକର୍ତ୍ତା :** ପାପରୁ ଅଥବା ପୁଣ୍ୟରୁ ନହେଲେ ପୁଣି ଯଦି ଉଭୟର ମିଶ୍ରଣ ହୁଏ ତେବେ କେଉଁ ଯୋନିରେ ଆମର ଜନ୍ମ ହୁଏ ?

**ଦାଦାଶ୍ରୀ :** ଜନ୍ମ ଏବଂ ପାପ-ପୁଣ୍ୟର କୌଣସି ନେବା-ଦେବା ନାହିଁ । ଜନ୍ମ ହେବା ପରେ ପାପ-ପୁଣ୍ୟ ତା'କୁ ଫଳ ଦିଅନ୍ତି । ଯୋନି କେଉଁ ଆଧାରରେ ମିଳେ ? ଯେ 'ମୁଁ ଚନ୍ଦୁଭାଇ ହିଁ ଅଟେ ଏବଂ ଏହା ମୁଁ କଲି' ଏପରି କୁହେ ନା, ତାହା ସହିତ ହିଁ ଯୋନିରେ ବୀଜ ପଡ଼ିଲା ।

ଏବେ କର୍ତ୍ତାପଣ କାହିଁକି ଅଛି ? ତେବେ କହିବା, 'କରୁଛି ଅନ୍ୟ କେହି, ପରଶକ୍ତି କାର୍ଯ୍ୟ କରୁଅଛି ଆଉ ନିଜେ ଏପରି ମାନୁଛି ଯେ ମୁଁ କରୁଛି ।' ପରଶକ୍ତିର ପ୍ରତ୍ୟକ୍ଷ ପ୍ରମାଣ କ'ଣ ? ତେବେ କହିବା, 'ଏହି ଜଗତରେ କେହି ଏପରି ଜନ୍ମି ନାହିଁ ଯେ ଯାହାକୁ ଝାଡ଼ା ଯିବାର ସ୍ୱତନ୍ତ୍ର ଶକ୍ତି ଥିବ । ତାହା ତ ଯେତେବେଳେ ପରଶକ୍ତି କରାଏ ସେତେବେଳେ ହୁଏ ।'

ଏବେ ଏହି ପରଶକ୍ତି କିପରି ଉତ୍ପନ୍ନ ହୋଇଗଲା ? ତେବେ କହିବା, ପ୍ରତ୍ୟେକ ଜୀବ ଅଜ୍ଞାନତାରେ କେବଳ ପୁଣ୍ୟ ଏବଂ ପାପ ହିଁ କରିପାରିବ, ସେ ଯେଉଁ ପାପ-ପୁଣ୍ୟ କରେ, ତାହାର ଫଳ ସ୍ୱରୂପ କର୍ମର ଉଦୟ ଆସେ । ସେହି ଉଦୟରୁ ପୁଣି କର୍ମ ବନ୍ଧନ ହୁଏ । 'ଏବେ ପୁଣ୍ୟ-ପାପ ବାନ୍ଧି ହେବାର ମୂଳ କାରଣ କ'ଣ ? ତାହା ବନ୍ଧା ନ ହେଉ ଏପରି କିଛି ଉପାୟ ଅଛି କି ?' ତେବେ କହିବା, 'କର୍ତ୍ତାପଣ ଯଦି ନ ହେବ ତେବେ ପାପ-ପୁଣ୍ୟର ବନ୍ଧନ ହୁଏ ନାହିଁ ।' 'କର୍ତ୍ତାପଣ କିପରି ହେବ ନାହିଁ ?' ତେବେ କହିବା, "ଯେପର୍ଯ୍ୟନ୍ତ ଅଜ୍ଞାନ ଅଛି, ସେପର୍ଯ୍ୟନ୍ତ 'ମୁଁ କରୁଛି' ସେହି *ଭାନ୍* ଅଛି । ଏବେ ବାସ୍ତବରେ 'କିଏ କରୁଛି ?' ତାହା ଯଦି ଜାଣେ ତେବେ କର୍ତ୍ତାପଣ ହେବ ନାହିଁ ।" ପୁଣ୍ୟ-ପାପର ଯେଉଁ ଯୋଜନା ଅଛି, ତାହା ଏ ସବୁ କରୁଛି ଆଉ ଆମେ

ମାନୁ ଯେ 'ମୁଁ କଲି' । ଲାଭ ତ ଆମର ସେ ହିଁ କରାଏ । ପୁଣ୍ୟର ଆଧାରରେ ଲାଭ ହୁଏ, ସେତେବେଳେ ଆମେ ବୁଝିନେଉ ଯେ 'ଓହୋହୋ ! ମୁଁ କମେଇଲି ।' ଆଉ ଯେତେବେଳେ ପାପର ଅଧୀନ ହୁଏ, ସେତେବେଳେ କ୍ଷତି ହୁଏ, ସେତେବେଳେ ଜଣା ପଡ଼େ ଯେ ଏହା ତ ମୋ ଅଧୀନରେ ନାହିଁ । କିନ୍ତୁ ପୁଣି ଦ୍ୱିତୀୟ ଥର ନିଜ ପୁଣ୍ୟ ଅଧୀନରେ ଯେବେ ହୁଏ ସେତେବେଳେ ଭୁଲି ଯାଏ । ସେଥିପାଇଁ ପୁଣି କର୍ତ୍ତା ହୋଇଯାଏ ।

ଏହି ପାଞ୍ଚ ଇନ୍ଦ୍ରିୟ ଦ୍ୱାରା ଯାହା କିଛି କରାଯାଏ, ପାଞ୍ଚ ଇନ୍ଦ୍ରିୟ ଦ୍ୱାରା ଯାହା କିଛି ଅନୁଭବରେ ଆସେ, ଏହି ଜଗତ ଯେଉଁ ଚାଲୁଅଛି ତାହା ସବୁ ପରସତ୍ତା ଅଟେ, ଆଉ ସେଥିରେ ଏ ଲୋକେ କହୁଛନ୍ତି ଯେ 'ଏହା ମୁଁ କଲି' । ସେହି କର୍ମର କର୍ତ୍ତା ହେଲା, ତାହା ହିଁ ଅଧିକରଣ କ୍ରିୟା ଅଟେ । ସେଥିପାଇଁ ପୁଣି ଭୋକ୍ତା ହେବାକୁ ପଡ଼େ ।

ଏବେ କର୍ତ୍ତାପଣ କିପରି ଯିବ ? ତେବେ କହିବା, ଯେପର୍ଯ୍ୟନ୍ତ ଆରୋପିତ ଭାବ ଅଛି ସେପର୍ଯ୍ୟନ୍ତ କର୍ତ୍ତାପଣ ଯିବ ହିଁ ନାହିଁ । ଯଦି ନିଜେ ନିଜର ମୂଳ ସ୍ୱରୂପରେ ଆସିଯାଏ ତେବେ କର୍ତ୍ତାପଣ ଯିବ । ସେହି ମୂଳ ସ୍ୱରୂପ କିପରି ଅଟେ ? ତେବେ କହିବା, 'କ୍ରିୟାକାରୀ ନୁହେଁ । ସେ ନିଜେ କ୍ରିୟାକାରୀ ହିଁ ନୁହେଁ ଏଣୁ ସେ କର୍ତ୍ତା ହେବ ହିଁ ନାହିଁ ନା !' କିନ୍ତୁ ସେ ତ ଅଜ୍ଞାନତାରେ ଧରି ବସିଛି ଯେ 'ଏହା ମୁଁ ହିଁ କରୁଛି' । ଏପରି ତା'କୁ ବେହୋସି ରହେ ଏବଂ ତାହା ହିଁ ଆରୋପିତ ଭାବ ଅଟେ ।

## ଶେଷରେ ତ ପାପ-ପୁଣ୍ୟ ଉଭୟରୁ ଉର୍ଦ୍ଧ୍ୱକୁ ଯିବାର ଅଛି

ପୁଣ୍ୟ, ତାହା କ୍ରିୟାର ଫଳ ଅଟେ, ପାପ ମଧ୍ୟ କ୍ରିୟାର ଫଳ ଅଟେ ଆଉ ମୋକ୍ଷ 'ଅକ୍ରିୟତା'ର ଫଳ ଅଟେ ! ଯେଉଁଠି କିଛି ବି କ୍ରିୟା ଅଛି, ସେଠି କର୍ମ ବନ୍ଧନ ଅଛି । ତାହା ପୁଣି ପୁଣ୍ୟର ହେଉ ଅବା ପାପର, କିନ୍ତୁ ବନ୍ଧନ ଅଟେ ! ଏବଂ 'ଜାଣେ' ତାହା ମୁକ୍ତି ଅଟେ । 'ବିଜ୍ଞାନ' ଜାଣିବା ଦ୍ୱାରା ମୁକ୍ତି ହୁଏ । ଏ ସବୁ ଯାହା-ଯାହା ତ୍ୟାଗ କରିବ, ତାହାର ଫଳ ଭୋଗିବାକୁ ପଡ଼ିବ । ତ୍ୟାଗ କରିବା ଆମ ହାତର ସତ୍ତା ଅଟେ ? ଗ୍ରହଣ କରିବା ଆମ ସତ୍ତା ଅଟେ ? ସେହି ସତ୍ତା ତ ପୁଣ୍ୟ-ପାପର ଅଧୀନ ଅଟେ ।

## ଭିତରେ ପ୍ରେରକ କିଏ ?

ଭିତରୁ ଯେଉଁ ଜଣା ପଡ଼େ, ଇନ୍‌ଫର୍ମେଶନ୍(ସୂଚନା) ମିଳେ, ତାହା ପୁଣ୍ୟ-ପାପ ବତାନ୍ତି । ଭିତରେ ପୁରା ଜ୍ଞାନ-ଦର୍ଶନ ହିଁ ଅଟେ । ଭିତରୁ ସବୁ ଖବର ମିଳେ ।

କିନ୍ତୁ ତାହା କେଉଁ ପର୍ଯ୍ୟନ୍ତ ମିଳେ, ନା ଯେପର୍ଯ୍ୟନ୍ତ ତୁମେ ଅଟକାଇବ ନାହିଁ । ତାହାର ଉଲଂଘନ ଯଦି କରିବ ତେବେ ଇନ୍‌ଫର୍ମେଶନ୍ ଆସିବା ବନ୍ଦ ହୋଇଯିବ ।

ଆତ୍ମା ପରମାତ୍ମା ସ୍ୱରୂପ ଅଟେ । ସେ ଭୁଲ ବି ବତାଏ ନାହିଁ ଏବଂ ଠିକ ବି ବତାଏ ନାହିଁ । ତାହା ତ ଯେବେ ପାପର ଉଦୟ ଆସେ ସେତେବେଳେ ଭୁଲ ଦେଖାଯାଏ ଏବଂ ପୁଣ୍ୟର ଉଦୟ ଆସିଲେ ଠିକ ଦେଖାଏ । ଏଥିରେ ଆତ୍ମା କିଛି ବି କରେ ନାହିଁ । ସେ ତ କେବଳ ସ୍ପନ୍ଦନ ସବୁକୁ ଦେଖୁ ହିଁ ଥାଏ ! ଏକାଗ୍ରତା ତ' ଭିତରୁ ଆମ କର୍ମର ଉଦୟ ଯଦି ସହଯୋଗ ଦିଏ ତେବେ ହୁଏ । ଉଦୟ ଯଦି ସହଯୋଗ ନ ଦିଏ ତେବେ ହୁଏ ନାହିଁ । ପୁଣ୍ୟର ଉଦୟ ହୁଏ ତେବେ ଏକାଗ୍ରତା ହୁଏ, ପାପର ଉଦୟ ହୁଏ ତେବେ ଏକାଗ୍ରତା ହୁଏ ନାହିଁ ।

## 'ଜ୍ଞାନୀ' ନିମିତ୍ତ, ଆତ୍ମପ୍ରାପ୍ତିର

**ପ୍ରଶ୍ନକର୍ତ୍ତା :** ଆତ୍ମାକୁ ଚିହ୍ନିବା ପାଇଁ ନିମିତ୍ତର ଆବଶ୍ୟକତା ପଡ଼େ କି ?

**ଦାଦାଶ୍ରୀ :** ନିମିତ୍ତ ବିନା ତ କିଛି ବି ହୁଏ ନାହିଁ ।

**ପ୍ରଶ୍ନକର୍ତ୍ତା :** ନିମିତ୍ତ ପୁଣ୍ୟରୁ ମିଳେ ନା ପୁରୁଷାର୍ଥରୁ ?

**ଦାଦାଶ୍ରୀ :** ପୁଣ୍ୟରୁ । ନହେଲେ, ଯଦି ପୁରୁଷାର୍ଥ କରେ ନା, ଏହି ଉପାଶ୍ରୟରୁ ସେହି ଉପାଶ୍ରୟ ଦୌଡ଼ି ବୁଲେ, ଏପରି ଅନନ୍ତ ଜନ୍ମ ପର୍ଯ୍ୟନ୍ତ ଭଟକି ଚାଲିବ ତେବେ ମଧ୍ୟ ନିମିତ୍ତ ପ୍ରାପ୍ତ ହେବ ନାହିଁ ଆଉ ଯଦି ନିଜର ପୁଣ୍ୟ ଥିବ ତେବେ ରାସ୍ତାରେ ମିଳିଯିବେ । ତାହା ପାଇଁ ପୁଣ୍ୟାନୁବନ୍ଧୀ ପୁଣ୍ୟ ଦରକାର ।

**ପ୍ରଶ୍ନକର୍ତ୍ତା :** 'ଜ୍ଞାନୀ ପୁରୁଷ' କେଉଁ ପୁଣ୍ୟର ଆଧାରରେ ମିଳନ୍ତି ?

**ଦାଦାଶ୍ରୀ :** ପୁଣ୍ୟାନୁବନ୍ଧୀ ପୁଣ୍ୟର ଆଧାରରେ ! ଏହା ହେଉଛି ଏକମାତ୍ର ସାଧନ ଯାଦ୍ୱାରା ମୋ ସହ ଭେଟ ହେବ । କୋଟି ଜନ୍ମର ପୁଣ୍ୟ ଜାଗ୍ରତ ହୁଏ, ତେବେ ଏହି ଜ୍ଞାନୀ ପୁରୁଷଙ୍କ ଯୋଗ ପ୍ରାପ୍ତ ହୁଏ ।

## ପୁଣ୍ୟ ରୂପୀ ସାଥୀ ମୋକ୍ଷର...

**ପ୍ରଶ୍ନକର୍ତ୍ତା :** ପୁଣ୍ୟର ଭାବ କ'ଣ ଆତ୍ମାର୍ଥେ ହିତକାରୀ ଅଟେ ?

**ଦାଦାଶ୍ରୀ :** ତାହା ଆତ୍ମା ପାଇଁ ହିତକର ଏଥିପାଇଁ ଅଟେ ଯେ ଯଦି ସେ ପୁଣ୍ୟ ଥିବ ତେବେ ଏଠି ସତସଙ୍ଗରେ ଜ୍ଞାନୀପୁରୁଷଙ୍କ ପାଖକୁ ଆସି ହେବ ନା! ନହେଲେ ଏହି ମଜୁରିଆଙ୍କର ପାପ ଅଛି, ଏଣୁ ସେ ବିଚରା ଏଠାକୁ କିପରି ଆସି ପାରିବ? ସାରାଦିନ ପରିଶ୍ରମ କରେ, ତେବେଯାଇ ତ ସନ୍ଧ୍ୟାରେ ଖାଇବାକୁ ପଇସା ମିଳେ। ଏହି ପୁଣ୍ୟର ଆଧାରରୁ ତ ତୁମକୁ ଘରେ ବସି ଖାଇବାକୁ ମିଳୁଛି ଏବଂ ଅଳ୍ପ-ବହୁତ ଅବକାଶ ମିଳୁଛି। ଏଣୁ ପୁଣ୍ୟ ତ ଆତ୍ମାର୍ଥେ ହିତକାରୀ ଅଟେ। ପୁଣ୍ୟ ଯଦି ଥିବ ତେବେ ଫୁରସତ୍ ମିଳେ। ଆମକୁ ଏପରି ସଂଯୋଗ ମିଳିଯାଏ, ଅଳ୍ପ ପରିଶ୍ରମରେ ପଇସା ମିଳେ ଏବଂ ପୁଣ୍ୟ ଥିବ ତେବେ ଅନ୍ୟ ପୁଣ୍ୟଶାଳୀ ଲୋକ ମିଳନ୍ତି, ନହେଲେ ଅଯୋଗ୍ୟ ହିଁ ମିଳନ୍ତି।

**ପ୍ରଶ୍ନକର୍ତ୍ତା :** ଆତ୍ମା ପାଇଁ ତାହା ଅଧିକ ହିତକାରୀ ଅଟେ କି?

**ଦାଦାଶ୍ରୀ :** ଅଧିକ ହିତକାରୀ ନୁହେଁ, କିନ୍ତୁ ତାହା ଆବଶ୍ୟକ ତ ଅଟେ ନା? କେବେ କେବେ ଏକ୍ସେପ୍‌ଶନଲ୍ (ନିୟମ ବର୍ହିଭୂତ) କେସ୍‌ରେ ଯଦି ପାପ ଥିବ ତେବେ ବହୁତ ହିତକାରୀ ହୋଇଯାଏ, କିନ୍ତୁ ପୁଣ୍ୟାନୁବନ୍ଧୀ ପାପ ହୋଇଥିବା ଦରକାର। ପୁଣ୍ୟାନୁବନ୍ଧୀ ପାପ ଯଦି ଥିବ, ତେବେ ଅଧିକ ହିତକାରୀ ହୋଇଯାଏ।

## ପାପ-ପୁଣ୍ୟ, ଉଭୟ ଭ୍ରାନ୍ତି ?

**ପ୍ରଶ୍ନକର୍ତ୍ତା :** ପୁଣ୍ୟଶାଳୀ ହୋଇଥିବ ତା'କୁ ସମସ୍ତେ 'ଆସନ୍ତୁ, ବସନ୍ତୁ' କରିବେ, ତେବେ ତାହା ଦ୍ୱାରା ତା'ର ଅହଙ୍କାର ବଢ଼ିବ ନାହିଁ?

**ଦାଦାଶ୍ରୀ :** ଏପରି ଅଟେ, ଏହି କଥା ଯାହାଙ୍କୁ ଜ୍ଞାନ ଅଛି ତାଙ୍କ ପାଇଁ ନୁହେଁ। ଏହା ତ ସଂସାରୀ କଥା ଅଟେ, ଯାହା ପାଖରେ 'ଜ୍ଞାନ' ଅଛି ତା' ପାଇଁ ତ ପୁଣ୍ୟ ବି ରହିଲା ନାହିଁ ଏବଂ ପାପ ବି ରହିଲା ନାହିଁ! ତା'କୁ ତ ଉଭୟର *'ନିକାଲ୍'* କରିବା ହିଁ ବାକି ରହିଲା। କାରଣ ପୁଣ୍ୟ ଏବଂ ପାପ ଉଭୟ ଭ୍ରାନ୍ତି ଅଟେ। କିନ୍ତୁ ଜଗତ ତାହାକୁ ବହୁତ ମୂଲ୍ୟବାନ ମାନିଛି! ଏଣୁ ଏହା ତ ଜଗତର କଥା କହୁଛି। କିନ୍ତୁ ଏହି ଜଗତରେ ଲୋକ ବିନା କାରଣରେ ଛଟପଟ ହେଉଛନ୍ତି।

## ବହୁତ ପୁଣ୍ୟ, ବଢ଼ାଏ ଅହଙ୍କାର...

ଏହା କଳିଯୁଗ ଅଟେ, ଏଥିରେ ଯଦି ଇଚ୍ଛା ହୁଏ ଏବଂ ତାହାର ପ୍ରାପ୍ତି ହୋଇଯାଏ

ତେବେ ତା'ର ଅହଙ୍କାର ବଢ଼ିଯାଏ ଏବଂ ପୁଣି ଗାଡ଼ି ଓଲଟା ଚାଲେ । ଏହି କଳିଯୁଗରେ ସର୍ବଦା ତା'କୁ ଯଦି ଠୋକର ଲାଗିବ ତେବେ ଭଲ । ଅର୍ଥାତ ପ୍ରତ୍ୟେକ ଯୁଗରେ ଏହି ବାକ୍ୟ ଅଲଗା-ଅଲଗା ପ୍ରକାରର ହୋଇଥାଏ । ସେଥିପାଇଁ ଏହି ଯୁଗର ଅନୁସରଣ କରି ଏପରି କହି ପାରିବା । ଏବେ ଯଦି ଇଚ୍ଛା ଅନୁସାରେ ମିଳିଯିବ ତେବେ ତା'ର ଅହଙ୍କାର ବଢ଼ିଯିବ, ମିଳେ ସବୁ ପୁଣ୍ୟ ହିସାବରେ ଏବଂ ବଢ଼େ କ'ଣ ? ଅହଙ୍କାର, 'ମୁଁ (ବିଶେଷ) ଅଟେ' । ସେଥିପାଇଁ ଏ ଯେତେ ସବୁ ଇଚ୍ଛା ହୁଏ, ତାହା ଅନୁସାରେ ଯଦି ନ ହୁଏ ତେବେ ତା'ର ଅହଙ୍କାର ଠିକଣାରେ ରୁହେ ଏବଂ କଥା ବୁଝିବାକୁ ଲାଗେ । ଠୋକର ଖାଏ ତେବେ ବୁଝା ପଡ଼େ, ନହେଲେ ବୁଝା ପଡ଼େ ହିଁ ନାହିଁ ନା ! ଇଚ୍ଛା ହୁଏ ଏବଂ ମିଳିଯାଏ, ସେଥିପାଇଁ ତ ଏମାନେ ଉପରକୁ ଚଢ଼ି ଯାଇଛନ୍ତି । ଇଚ୍ଛା ଅନୁସାରେ ମିଳିଲା, ସେଥିପାଇଁ ଏହି ଦଶା ହୋଇଛି ବିଚରାଙ୍କର । ଯେଉଁ ପୁଣ୍ୟ ଥିଲା ତାହା ତ ଖର୍ଚ୍ଚ ହୋଇଗଲା ଏବଂ ଓଲଟା ଫଶିଗଲେ ଏବଂ ଅହଙ୍କାର ଗାଢ଼ ହୋଇଗଲା ! ଅହଙ୍କାର ବଢ଼ିବା ପାଇଁ ସମୟ ଲାଗେ ନାହିଁ । ଫଳ କିଏ ଦିଏ ? ପୁଣ୍ୟ ଦିଏ ଏବଂ ମନରେ କ'ଣ ବୁଝେ ଯେ 'ମୁଁ ହିଁ କରୁଛି ।' ସେଥିପାଇଁ ଅହଙ୍କାରୀକୁ ଯଦି ମାଡ଼ ପଡ଼େ ତାହା ଭଲ । ଇଚ୍ଛା ହେଲା ଏବଂ ତୁରନ୍ତ ମିଳିଗଲା ତେବେ ପୁଣି ଘରେ ପାଦ ଏମିତି ଉପରେ ରଖେ । ବାପକୁ ବି ଖାତିର କରେ ନାହିଁ ଏବଂ କାହାକୁ ବି ଖାତିର କରେ ନାହିଁ । ଏଣୁ ଇଚ୍ଛା ହେଲା ଏବଂ ମିଳେ ତେବେ ବୁଝିବ ଯେ ଅଧୋଗତିରେ ଯିବ, ତା' ମସ୍ତିଷ୍କ ବଢ଼ି ବଢ଼ି ବିକୃତ ହୋଇଯାଏ । ଅଳ୍ପ-ବହୁତଙ୍କୁ ଏବେ ଇଚ୍ଛା ଅନୁସାରେ ମିଳିଛି, ସେମାନେ ତ ଏବେ ଲକ୍ଷ-ଲକ୍ଷ ଟଙ୍କାର ଫ୍ଲାଟ୍‌ରେ ରହୁଛନ୍ତି ଏବଂ ସେ ସମସ୍ତଙ୍କର ପଶୁ ପରି ଦଶା ହୋଇଗଲାଣି । ଫ୍ଲାଟ୍ ହୋଇଥିବ ଲକ୍ଷେର, କିନ୍ତୁ ତାହା ତା'ପାଇଁ ହିତକାରୀ ନୁହେଁ, କିନ୍ତୁ ଏହା ତ ସେମାନଙ୍କ ଉପରେ ଦୟା ରଖିବା ପରି ସ୍ଥିତି ଅଟେ ।

## ପୁଣ୍ୟରୁ ବି ବଢ଼େ ସଂସାର...

**ପ୍ରଶ୍ନକର୍ତ୍ତା :** ପୁଣ୍ୟର ବନ୍ଧନରୁ ସଂସାର ତ ବଢ଼େ, ସେପରି ଭାବାର୍ଥ ହେଲା ନା ?

**ଦାଦାଶ୍ରୀ :** ପୁଣ୍ୟ ଏମିତି ହିତକାରୀ ନୁହେଁ । ପୁଣ୍ୟ ତ ଏକ ପ୍ରକାର ହେଲ୍ପ କରେ । ପାପ ଥିବ, ତେବେ ଜ୍ଞାନୀପୁରୁଷ ମିଳିବେ ହିଁ ନାହିଁ । ଜ୍ଞାନୀପୁରୁଷଙ୍କୁ ଭେଟିବାର ଥିବ, କିନ୍ତୁ ସାରାଦିନ ମିଲ୍‌ରେ ଚାକିରୀ କରୁଥିବ ତେବେ କିପରି ଭେଟିବ ? ଏଣୁ

ଏହିପରି ପୁଣ୍ୟ ହେଲ୍ପ କରେ । ଆଉ ତାହା ମଧ୍ୟ ଯଦି ପୁଣ୍ୟାନୁବନ୍ଧୀ ପୁଣ୍ୟ ହୋଇଥିବ ତେବେ ତାହା ହେଲ୍ପ କରେ ।

**ପ୍ରଶ୍ନକର୍ତ୍ତା :** ଯେପରି ପାପରୁ ସଂସାର ବଢ଼େ ସେହିପରି ପୁଣ୍ୟରୁ ବି ସଂସାର ବଢ଼େ ନା ?

**ଦାଦାଶ୍ରୀ :** ପୁଣ୍ୟରୁ ମଧ୍ୟ ସଂସାର ତ ବଢ଼େ, କିନ୍ତୁ ଏଠାରୁ ଯେଉଁମାନେ ମୋକ୍ଷରେ ଯାଇଛନ୍ତି ନା, ସେମାନେ ଜବରଦସ୍ତ ପୁଣ୍ୟଶାଳୀ ଥିଲେ । ତାଙ୍କ ଆଖପାଖ ଯଦି ରାଣୀ ଦେଖିବାକୁ ଯିବ ତେବେ ଦୁଇଶହ-ପାଞ୍ଚଶହ ତ ରାଣୀ ଥା'ନ୍ତି ଏବଂ ରାଜ୍ୟ ତ ବହୁତ ବଡ଼ ହୋଇଥାଏ । ନିଜକୁ ଜଣା ମଧ୍ୟ ପଡୁ ନଥିଲା ଯେ କେବେ ସୂର୍ଯ୍ୟନାରାୟଣ ଉଦୟ ହେଲେ ଏବଂ କେବେ ଅସ୍ତ ହୋଇଗଲେ, ପୁଣ୍ୟଶାଳୀ ତ ଏଭଳି ବୈଭବରେ ଜନ୍ମ ହୋଇଥାନ୍ତି ! ଅନେକ ରାଣୀ ଥା'ନ୍ତି । ବୈଭବ ଥିବ ତଥାପି ସେମାନେ ବିରକ୍ତ ହୋଇଯାଉ ଥିଲେ ଯେ ଏହି ସଂସାରରେ କି ସୁଖ ଅଛି ? ପାଞ୍ଚଶହ ରାଣୀଙ୍କ ମଧ୍ୟରୁ ପଚାଶ ରାଣୀ ତାଙ୍କ ଉପରେ ଖୁସି ଥା'ନ୍ତି, ବାକି ସବୁ ମୁହଁ ଫୁଲେଇ ବୁଲୁଥାନ୍ତି । କେତେ ତ ରାଜାକୁ ମାରିବା ପାଇଁ ଚକ୍ରାନ୍ତ କରୁଥାନ୍ତି । ଅର୍ଥାତ ଏହି ଜଗତ ତ ଅତ୍ୟନ୍ତ ଦୁଷ୍କର ଅଟେ । ଏଥିରୁ ପାରି ହେବା ତ ବହୁତ କଷ୍ଟସାଧ୍ୟ ଅଟେ । ଜ୍ଞାନୀପୁରୁଷ ଯଦି ମିଳିବେ ତେବେ କେବଳ ସେ ହିଁ ମୁକୁଳାଇ ପାରିବେ, ଅନ୍ୟ କେହି ମୁକୁଳାଇ ପାରିବେ ନାହିଁ । ଜ୍ଞାନୀପୁରୁଷ ବନ୍ଧନ ମୁକ୍ତ ହୋଇ ସାରିଛନ୍ତି, ସେଥିପାଇଁ ଆମକୁ ମୁକ୍ତ କରାଇ ପାରିବେ । ସେ ତରଣତାରଣ ହୋଇଛନ୍ତି, ସେଥିପାଇଁ ସେ ମୁକୁଳାଇ ପାରିବେ ।

## ହତ୍ ପୁଣ୍ୟଶାଳୀ, ପାଆନ୍ତି ନାହିଁ ଜ୍ଞାନୀଙ୍କୁ

**ପ୍ରଶ୍ନକର୍ତ୍ତା :** ଆମେ ବହୁତ ଲୋକଙ୍କୁ ବୁଝାଉ ଯେ 'ଦାଦା'ଙ୍କ ପାଖକୁ ଆସ, କିନ୍ତୁ ସେମାନେ ଆସନ୍ତି ନାହିଁ ।

**ଦାଦାଶ୍ରୀ :** କିନ୍ତୁ ଆସିବା ସହଜ ନୁହେଁ । ତାହା ତ ବହୁତ ପୁଣ୍ୟ ଦରକାର । ଜବରଦସ୍ତ ପୁଣ୍ୟ ଥିବ ତେବେ ଭେଟ ହୁଏ । ପୁଣ୍ୟ ବିନା କିପରି ଭେଟିବ ? ତୁମେ କେତେ ପୁଣ୍ୟ କରିଥିଲ, ତେବେ ମୋତେ ଭେଟିଲ । ଅର୍ଥାତ ପୁଣ୍ୟ କମଜୋର ପଡ଼ି ଯାଉଛି, ଯେଉଁ କାରଣରୁ ସେମାନେ ଏବେ ପର୍ଯ୍ୟନ୍ତ ଭେଟି ପାରୁ ନାହାନ୍ତି ।

**ପ୍ରଶ୍ନକର୍ତ୍ତା :** ଲୋକଙ୍କ ପୁଣ୍ୟ କେବେ ଜାଗ୍ରତ ହେବ? ନିମିତ୍ତ ତ ଉତ୍କୃଷ୍ଟ ଅଛନ୍ତି ।

**ଦାଦାଶ୍ରୀ :** ହଁ, କିନ୍ତୁ ପୁଣ୍ୟ ଜାଗ୍ରତ ହେବା ଏତେ ସହଜ କଥା ନୁହେଁ ନା । ଯେଉଁମାନେ ପୁଣ୍ୟଶାଳୀ ହୋଇଥିବେ, ସେମାନଙ୍କର ପୁଣ୍ୟ ଜାଗ୍ରତ ହେବା ବିନା ରହିବ ନାହିଁ । ଏବେ ବି ଯେଉଁମାନେ ପୁଣ୍ୟଶାଳୀ ଥିବେ, ସେମାନଙ୍କର ଜାଗ୍ରତ ହେବ ନିଶ୍ଚିତ ।

## ଅକ୍ରମ ମାର୍ଗର ଲଟେରୀର ବିଜେତା...

ଏହି ପୁଣ୍ୟାନୁବନ୍ଧୀ ପୁଣ୍ୟଶାଳୀମାନଙ୍କ ପାଇଁ ଏପରି ମାର୍ଗ ବାହାରେ ନା ! ପ୍ରତ୍ୟକ୍ଷ ବିନା କିଛି ବି ହୋଇପାରେ ନାହିଁ । 'ବୀତରାଗ ବିଜ୍ଞାନ' ପ୍ରତ୍ୟକ୍ଷ ବିନା କାମରେ ଆସେ ସେପରି ନୁହେଁ ଆଉ ଏହା ତ 'ଅକ୍ରମ ବିଜ୍ଞାନ' ଏଥିରେ ତ କ୍ୟାଶ୍ ଡିପାର୍ଟମେଣ୍ଟ୍(ନଗଦ ଖାତା), କ୍ୟାଶ୍ ବ୍ୟାଙ୍କ(ନଗଦ ବ୍ୟାଙ୍କ) ଏବଂ କ୍ରମିକରେ ତ ତ୍ୟାଗ କରନ୍ତି, କିନ୍ତୁ କ୍ୟାଶ୍ ଫଳ ଆସେ ନାହିଁ ଆଉ ଏହା ତ କ୍ୟାଶ୍ ଫଳ !

ଏପରି ଜ୍ଞାନ ଏହି ସାଢ଼େ ତିନି ଶହ କୋଟି ଜନସଂଖ୍ୟାରେ କାହାକୁ ଦରକାର ନାହିଁ ? ସମସ୍ତଙ୍କୁ ଦରକାର । କିନ୍ତୁ ଏହି ଜ୍ଞାନ ସମସ୍ତଙ୍କ ପାଇଁ ନୁହେଁ । ଏହା ତ ମହାପୁଣ୍ୟଶାଳୀମାନଙ୍କ ପାଇଁ ଅଟେ । ଏହି 'ଅକ୍ରମ ଜ୍ଞାନ' ପ୍ରକଟ ହୋଇଛି, ସେଥିରେ ଲୋକଙ୍କର କିଛି ପୁଣ୍ୟ ଥିବ ନା ! କେବଳ ଭଗବାନଙ୍କ ଉପରେ ଆଶ୍ରା ରଖି ବୁଲୁଥିବା-ଭଟକୁଥିବା ଭକ୍ତମାନଙ୍କ ପାଇଁ ଏବଂ ଯାହାର ପୁଣ୍ୟ ଥିବ ସେମାନଙ୍କ ପାଇଁ 'ଏହି' ମାର୍ଗ ବାହାରିଛି । ଏହା ତ ବହୁତ ପୁଣ୍ୟଶାଳୀମାନଙ୍କ ପାଇଁ ଅଟେ ଏବଂ ଏଠାକୁ ସହଜରୂପେ ଆସି ହୃଦୟର ସହ ମାଗିଲେ ସେମାନଙ୍କୁ ଦେଇ ଦିଏ । କିନ୍ତୁ ଲୋକଙ୍କୁ ଏଥିପାଇଁ କିଛି କହିବାକୁ ଯିବା ପାଇଁ ପଡ଼େ ନାହିଁ । ଏହି 'ଦାଦା'ଙ୍କର ଏବଂ ତାଙ୍କ ମହାତ୍ମାମାନଙ୍କର ହାତ୍ୱାରୁ ହିଁ ଜଗତର କଲ୍ୟାଣ ହୋଇଯିବ । ମୁଁ ନିମିତ୍ତ ଅଟେ, କର୍ତ୍ତା ନୁହେଁ । ଏଠି ଯାହାକୁ ଭାବନା ହେଲା ଏବଂ 'ଦାଦା'ଙ୍କ ଦର୍ଶନ କଲା ତେବେ ସେ ଦର୍ଶନ ଶେଷ ପର୍ଯ୍ୟନ୍ତ ପହଞ୍ଚେ । 'ଦାଦା' ସେ ଏହି ଦେହର ନିକଟ ପଡ଼ୋଶୀ ପରି ରୁହନ୍ତି ଆଉ ଇଏ ଯେଉଁ କହୁଛି ତାହା ରେକର୍ଡ଼ ଅଟେ । ଏହି 'ଅକ୍ରମ ଜ୍ଞାନ' ତ କିଛି ବହୁତ ପୁଣ୍ୟଶାଳୀ ଥିବେ, ସେମାନଙ୍କ ପାଇଁ ଅଟେ, ଏଠି ତ ଯିଏ 'ସହଜ' ରୂପେ ଆସିଯାଏ ଏବଂ ତା' ପୁଣ୍ୟର ପାସପୋର୍ଟ ନେଇ ଆସେ, ତା'କୁ ମୁଁ ଜ୍ଞାନ ଦେଇ ଦିଏ । ଯିଏ 'ଦାଦା'ଙ୍କ କୃପା ପ୍ରାପ୍ତ କରି ନେଲା, ତା'ର କାମ ହୋଇଗଲା !

ଏଠାକୁ ଆସିଥିବା ଲୋକେ ସବୁ କେତେ ଭଲ ପୁଣ୍ୟ ନେଇ ଆସିଛନ୍ତି ! 'ଦାଦା'ଙ୍କ

ଲିଫ୍ଟରେ ବସି ମୋକ୍ଷ ଯିବାର ଅଛି । କୋଟି ଜନ୍ମର ପୁଣ୍ୟ ଜମା ହୋଇଥିବ, ତେବେ ତ 'ଦାଦା' ମିଳନ୍ତି ! ଆଉ ତା'ପରେ ପଛେ କିଭଳି ବି ଡିପ୍ରେଶନ୍ (ହତାଶା) ଥିବ ତାହା ଚାଲି ଯିବ । ସବୁ ଦିଗରୁ ଫଶିଥିବା ବ୍ୟକ୍ତି ପାଇଁ 'ଏହି' ସ୍ଥାନ ଅଟେ । ଆମର ଏଠି ତ କ୍ରୋନିକ୍(ପୁରୁଣା) ରୋଗ ଲୋପ ପାଇଯାଇଛି ।

## ବିଶ୍ୱରେ କୋଟିପତି କେତେ ?

ଜଣେ ମହାରାଜ ସେଠାକୁ ଆସିଥିଲେ, ସେଠି ଲକ୍ଷ-ଲକ୍ଷ ଲୋକ ଏକାଠି ହୋଇଥିଲେ । ଯେବେକି ଆମର ଏଠି ତ ଦୁଇଶହ-ତିନିଶହ ଲୋକ ଏକାଠି ହେଲେ । ଯଥା ସମ୍ଭବ ଅନ୍ତିମ ଷ୍ଟେସନ୍ ର ଟିକଟ କିଏ ନେବ ? ସେପରି ଲୋକ କମ ଥା'ନ୍ତି ଆଉ ମଝି ଷ୍ଟେସନ୍ ର ଟିକଟ ତ ସମସ୍ତେ ନିଅନ୍ତି । ସେଥିପାଇଁ ଜଣେ ବ୍ୟକ୍ତି ମୋତେ କୁହେ ଯେ, 'ଏପରି କାହିଁକି ?' ତେବେ ମୁଁ କହିଲି, 'ସାରା ଦୁନିଆରେ ଯଦି କୋଟିପତିଙ୍କ ନାମ ଗଣିବାକୁ ଯିବା ତେବେ କେତେ ହେବେ ?' ତେବେ କହିଲା, 'ସେମାନେ ତ ବହୁତ ଅଳ୍ପ ହେବେ ।' ମୁଁ କହିଲି, 'ଆଉ ସାମାନ୍ୟ ଲୋକ ?' ତେବେ କହିଲା, 'ସେମାନେ ତ ବହୁତ ।' ତେବେ ଏ ଯେଉଁମାନେ ଧର୍ମରେ ମହାପୁଣ୍ୟଶାଳୀ ଥିବେ ସେମାନେ ମୋତେ ଭେଟିବେ, ଆଉ ଟଙ୍କାର ପୁଣ୍ୟଶାଳୀ ହୋଇଥିବେ ସେମାନେ ତ କୋଟିପତି ହେବେ ଆଉ ଏହା ତ କୋଟିପତିଙ୍କ ଠାରୁ ମଧ୍ୟ ଉଚ୍ଚ ପୁଣ୍ୟ ଅଟେ ! ସେପରି ତ ବହୁତ କମ ଥାଆନ୍ତି ।

ପୁଣ୍ୟାନୁବନ୍ଧୀ ପୁଣ୍ୟ 'ଜ୍ଞାନୀ ପୁରୁଷ'ଙ୍କ ସହ ଭେଟ କରାଇ ଦିଏ ! ଏବେ ସେହି ପୁଣ୍ୟାନୁବନ୍ଧୀ ପୁଣ୍ୟ କାହାକୁ କୁହାଯାଏ ? ଯେ ଯାହାକୁ 'ଦାଦା ଭଗବାନ' ମିଳିଯାନ୍ତି । କୋଟି ଜନ୍ମ ପର୍ଯ୍ୟନ୍ତ ମିଳନ୍ତି ନାହିଁ, ସେପରି 'ଦାଦା', ସେ କେବଳ ଏକ ଘଣ୍ଟାରେ ଆମକୁ ମୋକ୍ଷ ଦେଇ ଦିଅନ୍ତି । ମୋକ୍ଷର ସୁଖ ଚଖାନ୍ତି, ଅନୁଭୂତି କରାଇ ଦିଅନ୍ତି, କେବେ କେମିତି ସେ ଦାଦା ଭଗବାନ ମିଳନ୍ତି, ଦେଖ ନା, ମୋତେ ବି ମିଳିଗଲେ ଏବଂ ତୁମକୁ ବି ମିଳିଗଲେ !

**ପ୍ରଶ୍ନକର୍ତ୍ତା :** ମୁଁ କେଉଁଠୁ କ'ଣ କମେଇକି ଆଣିଛି ? ଏହା ତ ଆପଣଙ୍କ କୃପା ଅଟେ ।

**ଦାଦାଶ୍ରୀ :** ପୁଣ୍ୟ ଅର୍ଥାତ କ'ଣ ଯେ ତୁମର ମୋ ସହ ଭେଟ ହେଲା, ତାହା ତୁମ ପାଖରେ କିଛି ହିସାବ ଥିଲା, ସେହି ଆଧାରରେ ! ନହେଲେ ମୋତେ ଭେଟିବା,

ତାହା ବହୁତ କଷ୍ଟକର । ସେଥିପାଇଁ ଏହି ଭେଟିବା, ତାହା ତୁମର ପୁଣ୍ୟ ଅଟେ ଏକ ପ୍ରକାରର, ଆଉ ଭେଟିବା ପରେ ଆସେ, ଟିକ୍କି ରହେ, ତେବେ ବହୁତ ଉଚ୍ଚ କଥା ।

## ପୁଣ୍ୟ ସହିତ ଦରକାର କଷାୟ ମନ୍ଦତା

**ପ୍ରଶ୍ନକର୍ତ୍ତା :** ସମକିତ୍ ପାଇଁ ପ୍ରୟାସ ଦରକାର ନୁହେଁ ?

**ଦାଦାଶ୍ରୀ :** ନା, ପ୍ରୟାସ ତ ଆପେ ଆପେ, ସହଜରୂପେ ପ୍ରୟାସ ହେବା ଉଚିତ । ଏହା ତ ହଳ କରୁଛନ୍ତି ଏ ଲୋକମାନେ ! ଅର୍ଥାତ ଆସନ୍ତା ଜନ୍ମରେ ଫଳ ନେବା ପାଇଁ । ସମକିତ୍‌ରେ ଫଳରହିତବାଲା ହେବା ଉଚିତ । ଏହା ତ ଜପ-ତପ ଆଦି ଯାହା-ଯାହା କରନ୍ତି ନା, ତାହାର ପୁଣ୍ୟ ବନ୍ଧନ ହୁଏ ଏବଂ ତାହାର ଫଳ ମିଳେ ।

**ପ୍ରଶ୍ନକର୍ତ୍ତା :** ତାହାର ଯାହା ବି ଫଳ ମିଳେ ତେବେ ତାହା ସମକିତ୍ ରୂପରେ ହିଁ ମିଳିବା ଉଚିତ ନା ?

**ଦାଦାଶ୍ରୀ :** ନା, ନା । ସମକିତ୍ ଏବଂ ଏହାର ନେବା-ଦେବା ନାହିଁ । ତାହା ସବୁ ଭୌତିକ ଫଳ ମିଳେ । ଦେବଗତି ମିଳେ, ସମକିତ୍ ତ ଅଲଗା ଜିନିଷ ଅଟେ ।

## ଏହି ତିନୋଟି ନିୟମ ପୁଣ୍ୟାନୁବନ୍ଧୀ ପୁଣ୍ୟର

ସମକିତ୍ ପ୍ରାପ୍ତି ପାଇଁ ପୁଣ୍ୟାନୁବନ୍ଧୀ ପୁଣ୍ୟ ଦରକାର । ମୋହ ଅଛି ତାହା ଯିବା ଦରକାର, କ୍ରୋଧ-ମାନ-ମାୟା-ଲୋଭ କମ ହେବା ଦରକାର । ତେବେ ସେ ସମକିତ ଆଡ଼କୁ ଯିବ । ନହେଲେ ପୁଣି ସମକିତ୍ ହେବ ହିଁ କିପରି ? ଏମାନଙ୍କର ତ କ୍ରୋଧ-ମାନ-ମାୟା-ଲୋଭ ବଢ଼େ ଏପରି କ୍ରିୟା ଅଟେ ସବୁ ।

**ପ୍ରଶ୍ନକର୍ତ୍ତା :** କ୍ରୋଧ-ମାନ-ମାୟା-ଲୋଭ କିପରି କମ ହୁଏ ଏବଂ ପୁଣ୍ୟାନୁବନ୍ଧୀ ପୁଣ୍ୟର ବନ୍ଧନ କିପରି ହୁଏ ?

**ଦାଦାଶ୍ରୀ :** ଆମକୁ କେବଳ ମୋକ୍ଷରେ ହିଁ ଯିବାର ଇଚ୍ଛା ହେବା ଉଚିତ ଏବଂ ସେହି ଇଚ୍ଛାର୍ଥେ ଯାହା-ଯାହା କରାଯାଏ, ସେହି କ୍ରିୟା ପୁଣ୍ୟାନୁବନ୍ଧୀ ପୁଣ୍ୟ ବାନ୍ଧେ, କାହିଁକିନା ହେତୁ ମୋକ୍ଷର ଅଟେ, ସେଥିପାଇଁ ।

ପୁଣି ନିଜ ପାଖକୁ ଯାହା ଆସିଥିବ ତାହା ଅନ୍ୟମାନଙ୍କ ପାଇଁ ଲୁଟେଇ ଦିଏ ! ତାହାକୁ ଜୀବନ ଜୀଇଁବା ଆସିଲା କୁହାଯିବ । ପାଗଳାମି କରି ନୁହେଁ, ବୁଝି-ବିଚାରି

ଲୁଟେଇ ଦିଏ । ପାଗଳାମି କରି ମଦ-ଫଦ ପିଉଥିବ, ସେଥିରେ କିଛି ମଙ୍ଗଳ ହୁଏ ନାହିଁ । କେବେ ବି ବ୍ୟସନ କରେ ନାହିଁ ଏବଂ ଅନ୍ୟ ପାଇଁ ଲୁଟାଏ, ତାହାକୁ ପୁଣ୍ୟାନୁବନ୍ଧୀ ପୁଣ୍ୟ କୁହାଯାଏ ।

ତାହାଠୁ ଅଧିକ ପୁଣ୍ୟାନୁବନ୍ଧୀ ପୁଣ୍ୟ କେଉଁଟା ? ପ୍ରତ୍ୟେକ କ୍ରିୟାରେ ପ୍ରତିବଦଳର ଇଚ୍ଛା ନ ରଖେ, ସାମନାବାଲାଙ୍କୁ ସୁଖ ଦେବା ସମୟରେ ପ୍ରତିବଦଳରେ କୌଣସି ବି ପ୍ରକାରର ଇଚ୍ଛା ନ ରଖେ, ତାହା ପୁଣ୍ୟାନୁବନ୍ଧୀ ପୁଣ୍ୟ !

## ଜ୍ଞାନ ହିଁ ମୁକୁଳାଏ ଭଟକିବାରୁ

ଲୋକମାନେ ଯାହା ଜାଣିଛନ୍ତି, ତାହା ଲୌକିକ ଜ୍ଞାନ ଅଟେ । ପ୍ରକୃତ ଜ୍ଞାନ ତ ବାସ୍ତବିକ ହୋଇଥାଏ ଏବଂ ବାସ୍ତବିକ ଜ୍ଞାନ କୌଣସି ବି ପ୍ରକାରର *ଅଜମ୍ପା* ହେବାକୁ ଦିଏ ନାହିଁ । ଭିତରେ କୌଣସି ପ୍ରକାରର ପଜ୍‌ଲ୍ ସୃଷ୍ଟି ହେବାକୁ ଦିଏ ନାହିଁ । ଏହି ଭ୍ରାନ୍ତିଜ୍ଞାନ ଦ୍ୱାରା ତ କେବଳ ପଜ୍‌ଲ୍ ହିଁ ସୃଷ୍ଟି ହୋଇ ଚାଲିଥାଏ, ଆଉ ସେହି ପଜ୍‌ଲ୍ ପୁଣି ସଲ୍‌ଭ ହୁଏ ନାହିଁ । କଥା ସତ ଅଟେ, କିନ୍ତୁ ତାହା ବୁଝା ପଡ଼ିବା ଦରକାର ନା ? ଅର୍ଥାତ ଦୃଷ୍ଟିରେ ଫିଟ୍ ହେବା ବିନା କେବେ ବି ସମାଧାନ ଆସେ ନାହିଁ । ଦୃଷ୍ଟିରେ ଫିଟ୍ ହେବା ଦରକାର । ବୁଝା ପଡ଼ିବା ପାଇଁ ପାପ ଧୋଇବାକୁ ପଡ଼େ । ଯେପର୍ଯ୍ୟନ୍ତ ପାପ ଧୋଇ ହୋଇନାହିଁ ସେପର୍ଯ୍ୟନ୍ତ ଠିକଣା ପଡ଼େ ନାହିଁ । ଏ ସବୁ ପାପ ହିଁ ବିଚଳିତ କରାଏ । ପାପ ରୂପୀ ଏବଂ ପୁଣ୍ୟ ରୂପୀ ଖିଲ(ବିଘ୍ନ) ଅଛି ମଝିରେ । ତାହା ହିଁ ମନୁଷ୍ୟଙ୍କୁ ବିଚଳିତ କରାଏ ।

ଅନନ୍ତ ଜନ୍ମରୁ ଭଟକି-ଭଟକି ଏହି ଭୌତିକ ପଛରେ ହିଁ ପଡ଼ି ରହିଛନ୍ତି । ଏହି ଭୌତିକ ଦ୍ୱାରା ଅନ୍ତରଶାନ୍ତି ହୁଏ ନାହିଁ । ଟଙ୍କାର ବିଛଣା ବିଛାଇଦେଲେ କ'ଣ ନିଦ ଆସିବ ? ଏହା ତ ନିଜର ସମସ୍ତ ଅନନ୍ତ ଶକ୍ତି ବ୍ୟର୍ଥ ହୋଇଗଲା !

ଜ୍ଞାନୀପୁରୁଷ ପାପ ଧୋଇ ଦିଅନ୍ତି । କୃଷ୍ଣ ଭଗବାନ ଗୀତାରେ କହିଛନ୍ତି, ଜ୍ଞାନୀପୁରୁଷ ପାପର ପୁଟୁଳି ତିଆରି କରି ତାହାକୁ ନଷ୍ଟ କରି ଦିଅନ୍ତି । ସେହି ପାପର ଯେବେ ନାଶ ହୋଇଯାଏ ତେବେ ଆତ୍ମା ପ୍ରକଟ ହୁଏ, ନହେଲେ କୌଣସି ବି ପ୍ରକାରେ ଆତ୍ମା ପ୍ରକଟ ହୁଏ ନାହିଁ । ନିଜେ କିପରି ପାପର ନାଶ କରି ପାରିବ ? ନୂଆ ପୁଣ୍ୟ ବାନ୍ଧି ପାରିବ ନିଶ୍ଚିତ, କିନ୍ତୁ ପୁରୁଣା ପାପର ନାଶ କରିପାରିବ ନାହିଁ । ଜ୍ଞାନୀପୁରୁଷଙ୍କ ଜ୍ଞାନ ହିଁ ପାପର ନାଶ କରିଦିଏ ।

ନହେଲେ, ପୁଣ୍ୟ ଏବଂ ପାପ, ପାପ ଏବଂ ପୁଣ୍ୟ, ତାହାର ଅନୁବନ୍ଧରେ ହିଁ ପ୍ରତ୍ୟେକ ମନୁଷ୍ୟ ଭଟକି ଚାଲିଥାଏ । ତା'କୁ କେବେ ବି ସେଥିରୁ ମୁକ୍ତି ମିଳେ ନାହିଁ । ବହୁତ ପୁଣ୍ୟ କରେ ତେବେ ବେଶୀ ହେଲେ ଦେବଗତି ମିଳେ, କିନ୍ତୁ ମୋକ୍ଷ ତ ମିଳେ ହିଁ ନାହିଁ । ମୋକ୍ଷ ତ ଯଦି ଜ୍ଞାନୀପୁରୁଷ ମିଳନ୍ତି, ଏବଂ ତୁମର ଅନନ୍ତକାଳର ପାପକୁ ଭସ୍ମୀଭୂତ କରି ତୁମ ହାତରେ ଶୁଦ୍ଧାତ୍ମା ଦିଅନ୍ତି ତେବେ ହୁଏ । ସେପର୍ଯ୍ୟନ୍ତ ଚୌରାଅଶୀ ଲକ୍ଷ ଯୋନିରେ ଭଟକିବାର ହିଁ ଅଛି ।

'ମୁଁ' ଜ୍ଞାନ ଦିଏ, ସେତେବେଳେ ଚିତ୍ତ ଶୁଦ୍ଧ କରିଦିଏ । ପାପର ନାଶ କରେ ଏବଂ ଦିବ୍ୟଚକ୍ଷୁ ଦେଇ ଦିଏ, ସବୁ ପ୍ରକାରେ ତା'ର ଆତ୍ମା ଏବଂ ଅନାତ୍ମାକୁ ଅଲଗା କରିଦିଏ !

## ଭିସା, ମହାବିଦେହ କ୍ଷେତ୍ରର

**ପ୍ରଶ୍ନକର୍ତ୍ତା :** ମହାବିଦେହ କ୍ଷେତ୍ରକୁ କିପରି ଯାଇ ହେବ ? ପୁଣ୍ୟ ଦ୍ୱାରା ?

**ଦାଦାଶ୍ରୀ :** ଏହି ଜ୍ଞାନ ମିଳିବା ପରେ ଯଦି ମୋର ପାଞ୍ଚ ଆଜ୍ଞା ପାଳେ, ତେବେ ତାହାଦ୍ୱାରା ଏହି ଜନ୍ମରେ ପୁଣ୍ୟ ବାନ୍ଧି ହେଉଥାଏ, ତାହା ମହାବିଦେହ କ୍ଷେତ୍ରକୁ ନେଇଯାଏ । ଆଜ୍ଞା ପାଳିବା ଦ୍ୱାରା ଧର୍ମଧ୍ୟାନ ହୁଏ । ତାହା ସବୁ ଫଳ ଦେବ । ଆମକୁ ମୋକ୍ଷରେ ଯିବାର ଅଛି, ସେଠାରେ ମୋକ୍ଷ ଯାଇ ହେବ, ସେତିକି ପୁଣ୍ୟ ଦରକାର । ଏଠାରେ ତୁମେ ସୀମନ୍ଧର ସ୍ୱାମୀଙ୍କର ଯେତିକି କରିବ (ଭକ୍ତି-ଆରାଧନା), ସେତିକି ସବୁ ତୁମର ଆସିଗଲା ।

ତୁମେ ସୀମନ୍ଧର ସ୍ୱାମୀଙ୍କ ନାମ ଶୁଣିଛ ନା ? ସେ ଏବେ ତୀର୍ଥଙ୍କର ଅଟନ୍ତି, ମହାବିଦେହ କ୍ଷେତ୍ରରେ ଆଜି ତାଙ୍କର ଉପସ୍ଥିତି ଅଛି ।

ସୀମନ୍ଧର ସ୍ୱାମୀଙ୍କ ଆୟୁଷ କେତେ, ୬୦-୭୦ ବର୍ଷ ହୋଇଥିବ ? ଏକଲକ୍ଷ ପଞ୍ଚସ୍ତରୀ ହଜାର ବର୍ଷ ଅଟେ ! ଏବେ ଲକ୍ଷେ ପଚିଶ ହଜାର ବର୍ଷ ରହିବେ ! ଏହା ତାଙ୍କ ସହିତ ତାର ଯୋଡ଼ି ଦେଉଛି । କାହିଁକିନା ସେଠାକୁ ଯିବାର ଅଛି । ଏଠାରୁ ସିଧା ମୋକ୍ଷ ହେବାର ନାହିଁ । ଏବେ ଏକ ଜନ୍ମ ବାକି ରହିବ । ତାଙ୍କ ପାଖରେ ବସିବାର ଅଛି ସେଥିପାଇଁ ତାର ଯୋଡ଼ି ଦେଉଛି ।

ଆଉ ଏହି ଭଗବାନ ପୁରା ୱର୍ଲ୍ଡର କଲ୍ୟାଣ କରିବେ । ତାଙ୍କ ନିମିତ୍ତରୁ ପୁରା

ଓ୍ବାର୍ଲଡର କଲ୍ୟାଣ ହେବ । କାରଣ ସେ ଜୀବନ୍ତ ଅଛନ୍ତି । ଯିଏ ମୋକ୍ଷରେ ଯାଇ ସାରିଥିବେ, ତାଙ୍କ ଦ୍ୱାରା କିଛି ହୋଇପାରିବ ନାହିଁ, ତାଙ୍କ ଭକ୍ତି ଦ୍ୱାରା କେବଳ ପୁଣ୍ୟ ବନ୍ଧନ ହୁଏ, ଯାହା ସଂସାର ଫଳ ଦିଏ !

## ସେଠି ପୁଣ୍ୟ ଏବଂ ପାପ ଉଭୟ *ନିକାଲୀ...*

ଧର୍ମ ଦୁଇ ପ୍ରକାର ଅଟେ । ଗୋଟିଏ ସ୍ୱାଭାବିକ ଧର୍ମ, ତାହାକୁ ରିୟଲ୍ ଧର୍ମ କୁହନ୍ତି । ଏବଂ ଅନ୍ୟଟି ବିଭାବିକ ଧର୍ମ, ଯାହାକୁ ରିଲେଟିଭ୍ ଧର୍ମ କୁହାଯାଏ । ଯେବେ 'ଶୁଦ୍ଧାତ୍ମା' ପ୍ରାପ୍ତ ହୋଇଯାଏ, ସେତେବେଳେ ସ୍ୱାଭାବିକ ଧର୍ମରେ ଆସେ । ସ୍ୱାଭାବିକ ଧର୍ମ ହିଁ ପ୍ରକୃତ ଧର୍ମ ଅଟେ, ସେହି ଧର୍ମରେ ଭଲ-ଖରାପ କିଛି ବାଛିବାର ହିଁ ନାହିଁ । ବିଭାବିକ ଧର୍ମରେ ସବୁ ବାଛିବାର ଅଛି ।

ଦାନ କରିବା, ଲୋକଙ୍କ ଉପରେ ଉପକାର କରିବା, ଓବ୍ଲାଇଜିଙ୍ଗ୍ ନେଚର୍ ରଖିବା, ଲୋକଙ୍କ ସେବା କରିବା, ସେ ସବୁକୁ ରିଲେଟିଭ୍ ଧର୍ମ କୁହାଯାଇଛି । ତାହାଦ୍ୱାରା ପୁଣ୍ୟ ବନ୍ଧନ ହୁଏ । ଆଉ ଗାଳି ଦେବା ଦ୍ୱାରା, ମାରାମାରି କରିବା ଦ୍ୱାରା, ଲୁଟିନେବା ଦ୍ୱାରା ପାପ ବନ୍ଧନ ହୁଏ । ପୁଣ୍ୟ ଏବଂ ପାପ ଯେଉଁଠି ଅଛି, ସେଠାରେ ରିୟଲ୍ ଧର୍ମ ହିଁ ନାହିଁ । ରିୟଲ୍ ଧର୍ମ ପୁଣ୍ୟ-ପାପ ରହିତ ଅଟେ । ଯେଉଁଠି ପୁଣ୍ୟ-ପାପକୁ ହେୟ (ତେଜ୍ୟ) ଗଣାଯାଏ ଏବଂ ନିଜର ଆତ୍ମ ସ୍ୱରୂପକୁ ଉପାଦେୟ (ଗ୍ରହଣୀୟ) ଗଣାଯାଏ, ସେଠି 'ରିୟଲ୍ ଧର୍ମ' ଅଛି । ଅର୍ଥାତ ଏହି 'ରିୟଲ୍' ଏବଂ 'ରିଲେଟିଭ୍' ଉଭୟ ଧର୍ମ ଅଲଗା ଅଟେ ।

ଯେପର୍ଯ୍ୟନ୍ତ 'ମୁଁ କିଏ' ଜାଣେ ନାହିଁ, ସେପର୍ଯ୍ୟନ୍ତ ପୁଣ୍ୟ ଉପାଦେୟ ରୂପେ ରହେ ଏବଂ ପାପ ହେୟ ରୂପେ ରହେ । ପୁଣ୍ୟ ଏବଂ ପାପ ଯେବେ ହେୟ ହୋଇଗଲା, ସେହିଠାରେ ସମକିତ୍ ! ଭଗବାନ କହିଛନ୍ତି ଯେ ପାପ-ପୁଣ୍ୟ ଉଭୟ ଉପରେ ଯାହାକୁ ଦ୍ୱେଷ ଅଥବା ରାଗ୍ ନାହିଁ ସେ 'ବୀତରାଗ' ଅଟେ !

**- ଜୟ ସଚ୍ଚିଦାନନ୍ଦ**

## ମୂଳ ଗୁଜରାଟୀ ଶବ୍ଦର ସମାର୍ଥକ ଶବ୍ଦ

ଆଧି : ମାନସିକ ଦୁଃଖ

*ଭାନ୍* : ହୋସ୍, ଜାଗୃତି, ଜ୍ଞାନ

*ଅଣହକ୍କ* : ହକ୍କ ବିନା, ଅବୈଧ

*କଢ଼ାପା* : ମନସ୍ତାପ, କ୍ଲେଶ

*ଅଜମ୍ପା* : ଅଧୀର, ଅଶାନ୍ତି, ଭୟ

ଆଶୟ : ଅଭିଲାଷ

*ଭୋଗବଟା* : ସୁଖ-ଦୁଃଖର ପ୍ରଭାବ

*ଅଶାତା* : ଦୁଃଖ ପରିଣାମ

*ଶାତା* : ସୁଖ ପରିଣାମ

*ଉପାଧି* : ବାହାରୁ ଆସୁଥିବା ଦୁଃଖ

*ନିୟାଣା* : ନିଜର ସମସ୍ତ ପୁଣ୍ୟ ଲଗାଇ କୌଣସି ଗୋଟିଏ ଜିନିଷର କାମନା କରିବା

ତିର୍ଯଞ୍ଚ : ପଶୁପକ୍ଷୀ, ବୃକ୍ଷଲତା, ମନୁଷ୍ୟ ବ୍ୟତୀତ ଅନ୍ୟସବୁ ଜୀବଜନ୍ତୁ

*ପୋଲ୍* : ଗଡ଼ବଡ଼

*ନିକାଲ୍* : ପୂରା କରିବା

ସତ୍ତା : କ୍ଷମତା, ଅଧିକାର

*ନିକାଲୀ* : *ନିକାଲ୍* କରିବା ଯୋଗ୍ୟ

ଗଳନ : ଡିସ୍‌ଚାର୍ଜ ହେବା, ତରଳିବା

ନିଶ୍ଚୟ : ସଂକଳ୍ପ

## ଶୁଦ୍ଧାତ୍ମାଙ୍କ ପ୍ରତି ପ୍ରାର୍ଥନା

(ପ୍ରତିଦିନ ଥରେ କରନ୍ତୁ)

ହେ ଅନ୍ତର୍ଯ୍ୟାମୀ ପରମାତ୍ମା ! ଆପଣ ପ୍ରତ୍ୟେକ ଜୀବମାତ୍ରରେ ବିରାଜମାନ ଅଛନ୍ତି, ଠିକ ସେହିପରି ମୋ ଭିତରେ ମଧ୍ୟ ବିରାଜମାନ ଅଛନ୍ତି । ଆପଣଙ୍କ ସ୍ୱରୂପ ହିଁ ମୋ ସ୍ୱରୂପ ଅଟେ । ମୋ ସ୍ୱରୂପ ଶୁଦ୍ଧାତ୍ମା ଅଟେ ।

ହେ ଶୁଦ୍ଧାତ୍ମା ଭଗବାନ ! ମୁଁ ଆପଣଙ୍କୁ ଅଭେଦ ଭାବରେ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି । ଅଜ୍ଞାନତାବଶ ମୁଁ ଯେଉଁ ଯେଉଁ ** ଦୋଷ କରିଛି, ସେ ସବୁ ଦୋଷଗୁଡ଼ିକୁ ଆପଣଙ୍କ ସମ୍ମୁଖରେ ପ୍ରକାଶ କରୁଛି । ସେ ସବୁ ପାଇଁ ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି ଏବଂ ଆପଣଙ୍କଠାରେ କ୍ଷମା ମାଗୁଛି । ହେ ପ୍ରଭୁ ! ମୋତେ କ୍ଷମା କରନ୍ତୁ, କ୍ଷମା କରନ୍ତୁ, କ୍ଷମା କରନ୍ତୁ ଆଉ ପୁଣି ଏପରି ଦୋଷ ନ କରେ, ଏପରି ଆପଣ ମୋତେ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

ହେ ଶୁଦ୍ଧାତ୍ମା ଭଗବାନ ! ଆପଣ ଏପରି କୃପା କରନ୍ତୁ ଯେପରି ମୋତେ ଭେଦଭାବ ଛୁଟିଯାଉ ଏବଂ ଅଭେଦ ସ୍ୱରୂପ ପ୍ରାପ୍ତ ହେଉ । ମୁଁ ଆପଣଙ୍କ ସହ ଅଭେଦ ସ୍ୱରୂପରେ ତନ୍ମୟାକାର ରୁହେଁ ।

** ଯେଉଁ ଯେଉଁ ଦୋଷ ହୋଇଛି, ସେ ସବୁକୁ ମନରେ ପ୍ରକାଶ କରନ୍ତୁ ।

## ପ୍ରତିକ୍ରମଣ ବିଧି

ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ଦେହଧାରୀ ......... (ଯାହା ପ୍ରତି ଦୋଷ ହୋଇଥିବ, ସେ ବ୍ୟକ୍ତିର ନାମ)ର ମନ-ବଚନ-କାୟାର ଯୋଗ, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମରୁ ଭିନ୍ନ, ଏପରି ହେ ଶୁଦ୍ଧାତ୍ମା ଭଗବାନ ! ଆପଣଙ୍କ ସାକ୍ଷୀରେ, ଆଜି ଦିନ ପର୍ଯ୍ୟନ୍ତ ମୋ ଦ୍ୱାରା ଯେଉଁ ଯେଉଁ ** ଦୋଷ ହୋଇଛି, ସେ ସବୁ ପାଇଁ ମୁଁ କ୍ଷମା ମାଗୁଛି, ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି । ମୋତେ କ୍ଷମା କରନ୍ତୁ ଏବଂ ପୁଣି ଏପରି ଦୋଷ କେବେ ମଧ୍ୟ କରିବି ନାହିଁ, ଏପରି ଦୃଢ଼ 'ନିଶ୍ଚୟ' କରୁଛି । ସେଥିପାଇଁ ମୋତେ ପରମ ଶକ୍ତି ଦିଅନ୍ତୁ ।

** କ୍ରୋଧ-ମାନ-ମାୟା-ଲୋଭ, ବିଷୟ-ବିକାର, କଷାୟ ଆଦି ଦ୍ୱାରା ସେହି ବ୍ୟକ୍ତିକୁ ଯାହା ବି ଦୁଃଖ ପହଞ୍ଚାଇ ଥିବ, ସେ ଦୋଷଗୁଡ଼ିକୁ ମନରେ ସ୍ମରଣ କରନ୍ତୁ ।



# ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ପ୍ରକାଶିତ ପୁସ୍ତକ

## ହିନ୍ଦୀ

୧. ଜ୍ଞାନୀପୁରୁଷ କୀ ପେହଚାନ୍
୨. ସର୍ବ ଦୁଃଖୋଁ ସେ ମୁକ୍ତି
୩. ଆତ୍ମବୋଧ
୪. ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀ
୫. ଦାଦା ଭଗବାନ କୌନ୍ ?
୬. ପୈସୋଁ କା ବ୍ୟବହାର
୭. ଅନ୍ତଃକରଣ କା ସ୍ୱରୂପ
୮. ପ୍ରେମ
୯. ସମଝ୍ ସେ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ (ସଂ.)
୧୦. ଦାନ
୧୧. ନିଜଦୋଷ ଦର୍ଶନ ସେ... ନିର୍ଦ୍ଦୋଷ
୧୨. ପତି-ପତ୍ନୀ କା ଦିବ୍ୟ ବ୍ୟବହାର
୧୩. କ୍ଲେଶ ରହିତ ଜୀବନ
୧୪. ଗୁରୁ-ଶିଷ୍ୟ
୧୫. ଅହିଂସା
୧୬. ସତ୍ୟ-ଅସତ୍ୟ କେ ରହସ୍ୟ
୧୭. ଚମତ୍କାର
୧୮. ବାଣୀ, ବ୍ୟବହାର ମେ...
୧୯. କର୍ମ କା ବିଜ୍ଞାନ
୨୦. ସହଜତା
୨୧. ଆପ୍ତବାଣୀ - ୧
୨୨. ଆପ୍ତବାଣୀ - ୨
୨୩. ଆପ୍ତବାଣୀ - ୩
୨୪. ଆପ୍ତବାଣୀ - ୪
୨୫. ଆପ୍ତବାଣୀ - ୫
୨୬. ଆପ୍ତବାଣୀ - ୬
୨୭. ଆପ୍ତବାଣୀ - ୭
୨୮. ଆପ୍ତବାଣୀ - ୮
୨୯. ଆପ୍ତବାଣୀ - ୯
୩୦. ଆପ୍ତବାଣୀ - ୧୩ (ପୂର୍ବାର୍ଦ୍ଧ - ଉତ୍ତରାର୍ଦ୍ଧ)
୩୧. ଆପ୍ତବାଣୀ - ୧୪ (ଭାଗ-୧)
୩୨. ସମଝ୍ ସେ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ (ପୂର୍ବାର୍ଦ୍ଧ - ଉତ୍ତରାର୍ଦ୍ଧ)
୩୩. ଜ୍ଞାନୀ ପୁରୁଷ (ଭାଗ-୧)
୩୪. ପ୍ରତିକ୍ରମଣ (ଗ୍ରନ୍ଥ)

## ଓଡ଼ିଆ ପୁସ୍ତକ :

୧. ଆତ୍ମସାକ୍ଷାତ୍କାର
୨. ଚିନ୍ତା
୩. କ୍ରୋଧ
୪. ମାନବ ଧର୍ମ
୫. ମୁଁ କିଏ ?
୬. ତ୍ରିମନ୍ତ୍ର
୭. ସେବା ପରୋପକାର
୮. ପ୍ରତିକ୍ରମଣ
୯. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର
୧୦. ଘର୍ଷଣ ଟାଳନ୍ତୁ
୧୧. କର୍ମର ସିଦ୍ଧାନ୍ତ
୧୨. ଜଗତ କର୍ତ୍ତା କିଏ ?
୧୩. ଯିଏ ଭୋଗେ ତା'ର ଭୁଲ
୧୪. ଯାହା ହେଲା ତାହା ନ୍ୟାୟ
୧୫. ଭାବନା ସୁଧାରେ ଜନ୍ମୋଜନ୍ମ
୧୬. ମାତା-ପିତା ଏବଂ ପିଲାଙ୍କ ବ୍ୟବହାର
୧୭. ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ
୧୮. ପାପ-ପୁଣ୍ୟ

★ ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ଗୁଜରାଟୀ ଭାଷାରେ ମଧ୍ୟ ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ **www.dadabhagwan.org** ଏବଂ **Dadabhagwan App** ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।

★ ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।

★ ଉପରୋକ୍ତ ଓଡ଼ିଆ ପୁସ୍ତକ ହିନ୍ଦୀ ଭାଷାରେ ମଧ୍ୟ ଉପଲବ୍ଧ ।

# ସମ୍ପର୍କ ସୂତ୍ର

## ଦାଦା ଭଗବାନ ପରିବାର


**ଅଡ଼ାଲଜ** : **ତ୍ରିମନ୍ଦିର,** ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ,
ପୋଷ୍ଟ-ଅଡ଼ାଲଜ,ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-382421
ଫୋନ- 9328661166/77
**Email :** info@dadabhagwan.org

**ମୁମ୍ବାଇ** : ତ୍ରିମନ୍ଦିର, ଋଷିବନ, କାଜୁପାଡା, ବୋରିବଲି (**E**)
ଫୋନ-9323528901

| | | | |
|---|---|---|---|
| **ଦିଲ୍ଲୀ** | : 9810098564 | **ବେଙ୍ଗାଲୁରୁ** | : 9590979099 |
| **କୋଲକତା** | : 9830080820 | **ହାଇଦ୍ରାବାଦ** | : 9885058771 |
| **ଚେନ୍ନାଇ** | : 7200740000 | **ପୁନେ** | : 7218473468 |
| **ଜୟପୁର** | : 8890357990 | **ଜଳନ୍ଧର** | : 9814063043 |
| **ଭୋପାଳ** | : 6354602399 | **ଚଣ୍ଡିଗଡ** | : 9780732237 |
| **ଇନ୍ଦୋର** | : 6354602400 | **କାନପୁର** | : 9452525981 |
| **ରାୟପୁର** | : 9329644433 | **ସାଙ୍ଗଲୀ** | : 9423870798 |
| **ପାଟନା** | : 7352723132 | **ଭୁବନେଶ୍ୱର** | : 8763073111 |
| **ଅମରାବତୀ** | : 9422915064 | **ବାରାଣସୀ** | : 9795228541 |

**U.S.A** : **DBVI, Tel . :**+1 877-505-DADA (3232),
**Email :** info@us.dadabhagwan.org

**U.K.** : +44 330-111-DADA (3232)

**Kenya** : +254 722 722 063

**UAE** : +971 557316937

**Dubai** : +971 501364530

**Australia** : +61 421127947

**New Zealand** : +64 21 0376434

**Singapore** : +65 81129229


# www.dadabhagwan.org



## ମୋକ୍ଷ ପାଇଁ, ପୁଣ୍ୟାନୁବନ୍ଧୀ ପୁଣ୍ୟ

ସମକିତ୍ ପ୍ରାପ୍ତି ପାଇଁ ପୁଣ୍ୟାନୁବନ୍ଧୀ ପୁଣ୍ୟ ଦରକାର । କ୍ରୋଧ-ମାନ-ମାୟା-ଲୋଭ କମ ହେବା ଦରକାର । ତେବେ ସେ ସମକିତ୍ ଆଡ଼କୁ ଯିବ । ଆମକୁ କେବଳ ମୋକ୍ଷରେ ହିଁ ଯିବାର ଇଚ୍ଛା ହେବା ଉଚିତ ଏବଂ ସେହି ଇଚ୍ଛାର୍ଥେ ଯାହା-ଯାହା କରାଯାଏ, ସେହି କ୍ରିୟା ପୁଣ୍ୟ ବାନ୍ଧେ, କାହିଁକିନା ହେତୁ ମୋକ୍ଷର ଅଟେ, ସେଥିପାଇଁ ।

ପୁଣି ନିଜ ପାଖରେ ଯାହା କିଛି ବି ଥାଏ ତାହା ଲୁଟେଇ ଦିଏ ! ଅନ୍ୟ ମାନଙ୍କ ପାଇଁ ଲୁଟେଇ ଦିଏ, ତାହା ପୁଣ୍ୟାନୁବନ୍ଧୀ ପୁଣ୍ୟ କୁହାଯାଏ । ପ୍ରତ୍ୟେକ କ୍ରିୟାରେ ପ୍ରତିବଦଳର ଇଚ୍ଛା ନ ରଖେ, ସାମନାବାଲାକୁ ସୁଖ ଦେବା ସମୟରେ ପ୍ରତିବଦଳରେ କୌଣସି ବି ପ୍ରକାରର ଇଚ୍ଛା ନ ରଖେ, ତାହାକୁ ପୁଣ୍ୟାନୁବନ୍ଧୀ ପୁଣ୍ୟ କୁହାଯାଏ !

\- ଦାଦାଶ୍ରୀ




dadabhagwan.org




Printed in India

Price ₹40